॥ ଶ୍ରୀହରିଃ ॥ 798

# ଗୁରୁତତ୍ତ୍ୱ

गुरुतत्त्व ( उड़िया )



ସ୍ୱାମୀ ରାମସୁଖଦାସ

[ ୭୯୪ ]

।। ଶ୍ରୀ ହରିଃ ।।

# ଗୁରୁତତ୍ତ୍ୱ



ସ୍ୱାମୀ ରାମସୁଖଦାସ

ଓଡ଼ିଆଭାଷାନ୍ତର : ଶ୍ରୀ ଦୀନବନ୍ଧୁ ପ୍ରହରାଜ

[ ७९४ ] गुरुतत्त्व ( उड़िया ) 1 —

॥ ଶ୍ରୀ ହରିଃ ॥

# ନମ୍ର ନିବେଦନ

'ଶ୍ରୀ କୃଷ୍ଣଂବନ୍ଦେ ଜଗଦ୍‌ଗୁରୁମ୍'- ଜଗଦ୍ ଗୁରୁ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରୁଅଛି । ବର୍ତ୍ତମାନ ଯୁଗରେ ଅତ୍ୟଧିକ ପାଖଣ୍ଡର ପ୍ରଚାର ହେତୁ ସାଧକଙ୍କୁ ଠିକ୍ ଠିକ୍ ସାଧନାର ମାର୍ଗ ଦର୍ଶନ ହୋଇପାରୁ ନାହିଁ । ଏଣୁ ସାଧକ ଭଗବତ୍ ପ୍ରାପ୍ତିରୁ ବଞ୍ଚିତ ହୋଇଯାଉଛନ୍ତି । ତେଣୁ ପ୍ରତ୍ୟେକ ସାଧକଙ୍କ କଲ୍ୟାଣ ନିମନ୍ତେ ସ୍ୱାମୀ ରାମସୁଖଦାସ ମହାରାଜଙ୍କ ଦ୍ୱାରା ଏହି ପୁସ୍ତିକାଟି ଗୀତାପ୍ରେସରେ ପ୍ରକାଶିତ ହୋଇଅଛି । ଆମ ଓଡ଼ିଆବାସୀ ମାନଙ୍କ ପଠନ-ପାଠନରେ ସୁବିଧା କରିବା ନିମନ୍ତେ ଏହାର ଭାଷାନ୍ତର ଓଡ଼ିଆ ଭାଷାରେ କରାଗଲା । ଏଣୁ ସମସ୍ତ ସାଧକ ମାନଙ୍କୁ ଅନୁରୋଧ କି ଏହି ପୁସ୍ତକକୁ ନିଜେ ପଢ଼ିବା ସହିତ ଅନ୍ୟମାନଙ୍କୁ ପଢ଼ିବା ପାଇଁ ପ୍ରେରଣା କରାନ୍ତୁ ଏବଂ ଏହାଦ୍ୱାରା ନିଜ ଜୀବନର କଲ୍ୟାଣ ପଥରେ ଅଗ୍ରସର ହୁଅନ୍ତୁ ।

— *ପ୍ରକାଶକ* —

॥ ଓଁ ଶ୍ରୀପରମାତ୍ମନେ ନମଃ ॥

# ଗୁରୁତତ୍ତ୍ୱ

ଗ୍ରନ୍ଥସ୍ୟ କୃଷ୍ଣସ୍ୟ,କୃପା ସତାଂ ଚ

ସର୍ବତ୍ର ସର୍ବେଷୁ ଚ ବିଦ୍ୟମାନା ।

ଯାବନ୍ନ ତାଚ୍ଛ୍ରଦ୍ଧଧତେ ମନୁଷ୍ୟ-

ସ୍ତାବନ୍ନ ସାକ୍ଷାତ୍‌କୁରୁତେ ସ୍ୱବୋଧମ୍ ॥

ଅର୍ଜୁନ ସର୍ବଦା ଭଗବାନ ଶ୍ରୀକୃଷ୍ଣଙ୍କ ସାଥିରେ ରହୁଥିଲେ; ଭଗବାନଙ୍କ ସାଥିରେ ଖାଇବା-ପିଇବା, ଉଠିବା-ବସିବା, ଶୋଇବା ଚେଇଁବା ଇତ୍ୟାଦି କରୁଥିଲେ; ପରନ୍ତୁ ଭଗବାନ ତାଙ୍କୁ ଗୀତାର ଉପଦେଶ ସେତେବେଳେ ଦେଲେ, ଯେତେବେଳେ ତାଙ୍କ ହୃଦୟରେ ନିଜ ଶ୍ରେୟର, କଲ୍ୟାଣର ଏବଂ ଉଦ୍ଧାରର ଇଚ୍ଛା ଜାଗ୍ରତ ହୋଇଥିଲା- **'ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ (୨/୭)** । ଏପରି ଇଚ୍ଛା ଜାଗ୍ରତ ହେବାପରେ ସେ ନିଜକୁ ଭଗବାନଙ୍କର ଶିଷ୍ୟ ବୋଲି

ମନେକଲେ ଏବଂ ଭଗବାନଙ୍କର ଶରଣାଗତ ହୋଇ ଶିକ୍ଷା ପାଇବା ପାଇଁ ପାର୍ଥନା କଲେ- **'ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍'** (୨/୭) । ଏହି ପ୍ରକାର କଲ୍ୟାଣର ଇଚ୍ଛା ଜାଗ୍ରତ ହେବାପରେ ଅର୍ଜୁନ ନିଜକୁ ଭଗବାନଙ୍କର ଶିଷ୍ୟବୋଲି ମାନି; ଶିକ୍ଷାଦେବାପାଇଁ ଭଗବାନଙ୍କୁ ପାର୍ଥନା କରିଥିଲେ, କିନ୍ତୁ ଗୁରୁଶିଷ୍ୟ ପରମ୍ପରାନୁଯାୟୀ ଗୁରୁ କରିନ ଥିଲେ । ଭଗବାନ ମଧ୍ୟ ଶାସ୍ତ୍ରପଦ୍ଧତି ଅନୁସାରେ ଅର୍ଜୁନଙ୍କୁ ଶିଷ୍ୟରୂପେ ଗ୍ରହଣ କରି, ଗୁରୁମନ୍ତ୍ର ଦେଇ, ଶିର ଉପରେ ହାତ ରଖି, ଉପଦେଶ ଦେଇ ନଥିଲେ । ଏଥିରୁ ସିଦ୍ଧ ହୁଏ ଯେ ପାରମାର୍ଥିକ ଉନ୍ନତିରେ ଗୁରୁ-ଶିଷ୍ୟର ସମ୍ବନ୍ଧ ଯୋଗ କରିବାର ଆବଶ୍ୟକତା ନାହିଁ, କିନ୍ତୁ ନିଜର ତୀବ୍ରଜିଜ୍ଞାସା, ନିଜ କଲ୍ୟାଣର ତୀବ୍ରଲାଳସା ଜାଗ୍ରତ ହେବା ଆବଶ୍ୟକ । ନିଜର ଉଦ୍ଧାର ପାଇଁ ତୀବ୍ର ଇଚ୍ଛା ଜାଗ୍ରତ ହେଲେ, ଭଗବତ୍-କୃପାରେ, ସାଧୁ ମହାପୁରୁଷଙ୍କର ଭାଷଣରେ, ଶାସ୍ତ୍ରରେ, ଗ୍ରନ୍ଥରେ, କୌଣସି ବିଶେଷ ଘଟଣା ପରିସ୍ଥିତିରେ ବା କୌଣସି ବାୟୁ ମଣ୍ଡଳରେ ଆପେ ଆପେ ସାଧକର ପାରମାର୍ଥିକ ଉନ୍ନତିର ପଥ ଏବଂ ସାଧନ ସାମଗ୍ରୀର ପ୍ରାପ୍ତି ହୋଇଥାଏ ଏବଂ ସେ ତାହା ସାଦରେ ଗ୍ରହଣ କରିଥାଏ । ଗୀତା ବାହ୍ୟବିଧିକୁ, ବାହ୍ୟ ପରିବର୍ତ୍ତନକୁ, ଏତେ ଆଦର ଦିଏ ନାହିଁ, ଯେତେ ଆଦର ଆଭ୍ୟନ୍ତର ଭାବକୁ, ବିବେକକୁ, ବୋଧକୁ,

ଜିଜ୍ଞାସାକୁ, ତ୍ୟାଗକୁ ଦେଇଥାଏ । ଗୀତା ଯଦି ବାହ୍ୟ ବିଧିସମୂହ, ପରିବର୍ତ୍ତନ ଏବଂ ଗୁରୁଶିଷ୍ୟର ସମ୍ପର୍କକୁ ପ୍ରାଧାନ୍ୟ ଦେଇଥାନ୍ତା, ତାହାହେଲେ ତାହା ସର୍ବ-ସମ୍ପ୍ରଦାୟ ପ୍ରତି ଏତେ ଗ୍ରହଣ ଯୋଗ୍ୟ, ଆଦରଣୀୟ ହୋଇ ପାରି ନଥାନ୍ତା ଅର୍ଥାତ୍ ଗୀତାରେ ଯେଉଁ ବିଶେଷ ସମ୍ପ୍ରଦାୟର ବିଧି ବର୍ଣ୍ଣନା ଥାଆନ୍ତା, ତାହା କେବଳ ସେହି ସମ୍ପ୍ରଦାୟର ଲୋକମାନେହିଁ ଅନୁସରଣ କରୁଥାଆନ୍ତେ । ତାହାହେଲେ ଗୀତା ସର୍ବ-ସମ୍ପ୍ରଦାୟ ପ୍ରତି ଉପଯୋଗୀ ହୋଇ ନଥାନ୍ତା ଏବଂ ତାର ପଠନ, ପାଠନ ମନନ ଚିନ୍ତନ ଇତ୍ୟାଦିରେ ସର୍ବ ସମ୍ପ୍ରଦାୟର ଆକର୍ଷଣ ରହନ୍ତା ନାହିଁ । କିନ୍ତୁ ଗୀତାର ଉପଦେଶ ସାର୍ବଭୌମ, ତାହା କୌଣସି ବିଶେଷ ସମ୍ପ୍ରଦାୟ ବା ବ୍ୟକ୍ତିଙ୍କ ପାଇଁ ନୁହେଁ, ବରଂ ମନୁଷ୍ୟ ସମାଜପାଇଁ ।

ଗୀତାରେ ବର୍ଣ୍ଣିତ ଜ୍ଞାନ ପ୍ରକରଣରେ, **''ପ୍ରଣିପାତେନ ପରିପ୍ରଶ୍ନେନ ସେବୟା'' (୪/୩୪)** ଏବଂ **'ଆଚାର୍ଯ୍ୟୋପାସନମ୍' (୧୩/୭)** ପଦଦ୍ୱାରା ଆଚାର୍ଯ୍ୟଙ୍କ ସେବା, ଓ ଉପାସନା ବିଷୟରେ କୁହାଯାଇଅଛି ଏହାର ତାତ୍ପର୍ଯ୍ୟ ଏହି ଯେ ଜ୍ଞାନମାର୍ଗୀ ସାଧକଙ୍କ ପାଇଁ ''ମୁଁ ବ୍ରହ୍ମ ଅଟେ''- ଏହିପରି ଅଭିମାନ ରହିବାର ବିଶେଷ ସମ୍ଭାବନା ରହିଅଛି । ଏଣୁ ସାଧକକୁ ସାବଧାନ କରାଇବା ପାଇଁ ତତ୍ତ୍ୱଜ୍ଞ ଜୀବନ୍ମୁକ୍ତ ଆଚାର୍ଯ୍ୟ କିମ୍ବା ଗୁରୁଙ୍କର ଅଧିକ ଆବଶ୍ୟକ ରହେ । କିନ୍ତୁ ସେହିପରି ଆବଶ୍ୟକତା ମଧ୍ୟ ସେ ସମୟରେ

ରହେ, ଯେତେବେଳେ ସାଧକଠାରେ ତୀବ୍ର ଜିଜ୍ଞାସାର ନ୍ୟୁନତା ଅଥବା ଏହିପରି ଭାବନା ରହେ କି ଗୁରୁଜୀ ମହାରାଜ ଉପଦେଶ ପ୍ରଦାନ କଲେ ଜ୍ଞାନୋଦୟ ହେବ । ତୀବ୍ର ଜିଜ୍ଞାସା ହେବାପରେ ସାଧକ ତତ୍ତ୍ୱର ଅନୁଭବ କରିବାବିନା କୌଣସି ଅବସ୍ଥାରେ ସନ୍ତୋଷ ଆସିପାରେନାହିଁ । କୌଣସି ସମ୍ପ୍ରଦାୟରେ ମଧ୍ୟ ବାନ୍ଧିହୋଇରହି ପାରେନାହିଁ ଏବଂ କୌଣସି ବିଶେଷତାକୁ ନେଇ ନିଜଠାରେ ଅଭିମାନ କରେନାହିଁ । ଏହିପରି ସାଧକର ଜିଜ୍ଞାସା-ପୂର୍ତ୍ତି ଭଗବତ୍ କୃପାରେ ହୋଇଥାଏ । ଗୁରୁ-ଶିଷ୍ୟ ସମ୍ବନ୍ଧଦ୍ୱାରା ତତ୍ତ୍ୱଜ୍ଞାନ ଜନ୍ମିବା-ପ୍ରାୟ ଦୃଷ୍ଟି ଗୋଚର ହୁଏ ନାହିଁ । କାରଣ ଯେଉଁ ଲୋକମାନେ ଗୁରୁ ଗ୍ରହଣ କରନ୍ତି, ଗୁରୁ–ଶିଷ୍ୟସମ୍ବନ୍ଧ ସ୍ୱୀକାର କରନ୍ତି; ସେମାନଙ୍କର ଜ୍ଞାନ ହୋଇଥିବା ଦେଖାଯାଏ ନାହିଁ । ପରଂତୁ ତୀବ୍ର ଜିଜ୍ଞାସା ହେବାପରେ ଜ୍ଞାନ ହୋଇଥିବା, ଦେଖିବା ଓ ଶୁଣିବାର ଦେଖାଯାଏ । ତୀବ୍ର ଜିଜ୍ଞାସୁଙ୍କ ପାଇଁ ଗୁରୁ-ଶିଷ୍ୟ ସମ୍ବନ୍ଧ ସ୍ୱୀକାର କରିବାର ଆବଶ୍ୟକତା ନାହିଁ । ତାତ୍ପର୍ଯ୍ୟ ଏହା ଯେ, ଯେ ପର୍ଯ୍ୟନ୍ତ ନିଜର ତୀବ୍ର ଜିଜ୍ଞାସା ଜାଗ୍ରତ ହୋଇନାହିଁ, ସେପର୍ଯ୍ୟନ୍ତ ଗୁରୁ- ଶିଷ୍ୟର ସମ୍ବନ୍ଧ ସ୍ୱୀକାର କଲେ ମଧ୍ୟ ଜ୍ଞାନ ହୁଏନାହିଁ ଏବଂ ତୀବ୍ର ଜିଜ୍ଞାସା ହେବା ପରେ ସାଧକ ଗୁରୁ,ଶିଷ୍ୟ ସମ୍ବନ୍ଧ ବିନା ମଧ୍ୟ ଜ୍ଞାନ ଗ୍ରହଣ କରିନିଏ । ତୀବ୍ର ଜିଜ୍ଞାସା ଜନ୍ମିଥିବା ସାଧକଙ୍କୁ ଯଥା ଶୁକଦେବଙ୍କ ପରି ସନ୍ଥଙ୍କୁ ଭଗବାନ ସ୍ୱପ୍ନରେ ମଧ୍ୟ ମନ୍ତ୍ର ପ୍ରଦାନ କରିଥିଲେ ।

ଶିଷ୍ୟହୋଇଗଲେ ଗୁରୁଙ୍କ ଉପଦେଶ ଦ୍ୱାରା ଜ୍ଞାନ ହୋଇଯିବା ନିୟମ ନୁହେଁ । କାରଣ ଉପଦେଶ ମିଳିବା ପରେ ମଧ ଯଦି ନିଜ ହୃଦୟରେ ତୀବ୍ର ଜିଜ୍ଞାସା ଜାତ ନହୁଏ । ତେବେ ଶିଷ୍ୟ ସେହି ଉପଦେଶକୁ ଧାରଣ କରିପାରେ ନାହିଁ । କିନ୍ତୁ ତୀବ୍ର ଜିଜ୍ଞାସା, ଶ୍ରଦ୍ଧା ଓ ବିଶ୍ୱାସ ଜନ୍ମିଗଲେ, ମନୁଷ୍ୟ କୌଣସି ସମ୍ବନ୍ଧବିନା, ଉପଦେଶକୁ ଧାରଣ କରିନିଏ ।- 'ଶ୍ରଦ୍ଧାବାଁଲ୍ଲଭତେଜ୍ଞାନମ୍' (୪/୩୯/ଗୀତା), ତାତ୍ପର୍ଯ୍ୟ ଏହିକି ଜ୍ଞାନ ହୃଦୟର ଜିଜ୍ଞାସା, ଉତ୍କଣ୍ଠା ଦ୍ୱାରା ହିଁ ଜାତ ହୋଇଥାଏ, କେବଳ ଗୁରୁଗ୍ରହଣ କରିବାଦ୍ୱାରା ନୁହେଁ ।

ପୁଣି ଯଦି କୌଣସି ବ୍ୟକ୍ତିଙ୍କୁ ପ୍ରକୃତ ଗୁରୁ ମିଳିଥାଆନ୍ତି, ତେବେ ସେ ତାଙ୍କ ଗୁରୁ, ମହତ୍ତ୍ୱ ଇତ୍ୟାଦି ସ୍ୱୀକାର କରି ତାଙ୍କ ଉପରେ ଶ୍ରଦ୍ଧା ବିଶ୍ୱାସ କରିବାଦ୍ୱାରା ତାଙ୍କଠାରୁ ଲାଭ ପାଇ ଥାଆନ୍ତି । ମାତ୍ର ଯଦି ସେ ନିଜେ ଶ୍ରଦ୍ଧା ବିଶ୍ୱାସ କରନ୍ତି ନାହିଁ ତେବେ ଭଗବାନଙ୍କୁ ପାଇଲେ ମଧ ତାଙ୍କର କଲ୍ୟାଣ ହୁଏ ନାହିଁ ।

ଦୁର୍ଯ୍ୟୋଧନଙ୍କୁ ଭଗବାନ ଶ୍ରୀକୃଷ୍ଣ ଉପଦେଶ ପ୍ରଦାନ କଲେ ଏବଂ ପାଣ୍ଡବଙ୍କ ସହିତ ସନ୍ଧି କରିବାପାଇଁ ବହୁତ ବୁଝାଇଲେ, ମାତ୍ର ଦୁର୍ଯ୍ୟୋଧନଙ୍କ ଉପରେ ଭଗବାନଙ୍କର କୌଣସି ପ୍ରଭାବ ପଡ଼ିଲା ନାହିଁ । ଦୁର୍ଯ୍ୟୋଧନ ନମାନିବାରୁ ଭଗବାନ ମଧ କିଛି କରିପାରିଲେ

ନାହିଁ । ତାତ୍ପର୍ଯ୍ୟ ଏହାଯେ ନିଜେ ମାନିବା ଓ ସ୍ୱୀକାର କରିବାଦ୍ୱାରା ହିଁ କଲ୍ୟାଣ ହୋଇଥାଏ । ଏଣୁ ଗୀତା ନିଜେ ନିଜକୁ ଉଦ୍ଧାର କରିବାପାଇଁ ପ୍ରେରଣା ଦେଉଛନ୍ତି ।

"'ଉଦ୍ଧରେଦାତ୍ମନାତ୍ମାନମ୍'' (୬/୫) ।"

ଜ୍ଞାନମାର୍ଗର ସାଧନାପାଇଁ ଗୀତାରେ ଆଚାର୍ଯ୍ୟ, ଓ ଗୁରୁ ଆଦିଙ୍କର ଉପାସନାର କଥା କୁହାଯାଇଅଛି, କିନ୍ତୁ କର୍ମଯୋଗ ଏବଂ ଭକ୍ତି-ମାର୍ଗରେ ଗୁରୁ ଆଦିଙ୍କର ଆବଶ୍ୟକତା ବିଷୟରେ କୁହାଯାଇନାହିଁ । କାରଣ କି ଯଦି କୌଣସି ଘଟଣା, ପରିସ୍ଥିତି ଇତ୍ୟାଦି ର ପ୍ରଭାବରୁ ଏପରି ଭାବନା ଜାଗ୍ରତ ହୋଇଯାଏ କି 'ସ୍ୱାର୍ଥଭାବରେ କର୍ମ କରିବାଦ୍ୱାରା ଅଭାବର ପୂର୍ତ୍ତି ହେଉନାହିଁ, ସ୍ୱାର୍ଥଭାବକୁ ହୃଦୟରେ ରଖିବା ପଶୁତା, ମାନବତା ନୁହେଁ; ସେତେବେଳେ ମନୁଷ୍ୟ ସ୍ୱାର୍ଥଭାବ ଏବଂ କାମନା ତ୍ୟାଗକରି ସେବା ପରାୟଣ ହୋଇଯାଏ । ସେବା-ପରାୟଣ ହେବାଦ୍ୱାରା ସେହି କର୍ମଯୋଗୀ ସ୍ୱତଃ ନିଜ ହୃଦୟରେ ତତ୍ତ୍ୱ ଜ୍ଞାନ ଅନୁଭବ କରେ—

**'ତତ୍ସ୍ୱୟଂ ଯୋଗସଂସିଦ୍ଧଃ କାଳେନାତ୍ମନିବିନ୍ଦତି'(୪/୩୮)**

ଏପରି କୌଣସି ଏକ ବିଲକ୍ଷଣ ଶକ୍ତି ରହିଅଛି, ଯାହାଦ୍ୱାରା ସମ୍ପୂର୍ଣ୍ଣ ସଂସାର ପରିଚାଳିତ ହେଉଅଛି । ଯେତେବେଳେ ମନୁଷ୍ୟ

ସେହି ଶକ୍ତି ଉପରେ ବିଶ୍ୱାସୀ ହୋଇଯାଏ, ସେତେବେଳେ ସେ ଭଗବତ୍ ମାର୍ଗରେ ଅଗ୍ରସର ହୋଇଥାଏ । ଭଗବାନଙ୍କଠାରେ ଯୁକ୍ତ ହୋଇଥିବା ଭକ୍ତଙ୍କର ଅଜ୍ଞାନ- ଅନ୍ଧକାରର ନାଶ ଭଗବାନସ୍ୱୟଂ କରନ୍ତି ( ଗୀତା ୧୦/୧୧ ); ଏବଂ ଭଗବାନ ସ୍ୱୟଂ ସେହି ଭକ୍ତର ମୃତ୍ୟୁ-ସଂସାରର ଉଦ୍ଧାରକାରୀ ହୋଇ ଯାଆନ୍ତି (ଗୀତା/୧୨/୭)

ଏହା ଭଗବାନଙ୍କର ଏକ ବିଲକ୍ଷଣ ଉଦାରତା, ଓ ଦୟାଳୁତା ଯେ, ଯେଉଁ ପ୍ରାଣୀ ତାଙ୍କୁ ମାନୁନାହିଁ, ତାଙ୍କର ଖଣ୍ଡନ କରୁଅଛି ଅର୍ଥାତ୍ ନାସ୍ତିକ; ଯଦି ତାହାର ହୃଦୟରେ ତତ୍ତ୍ୱକୁ ଓ ନିଜର ସ୍ୱରୂପକୁ ଜାଣିବାପାଇଁ ତୀବ୍ର ଜିଜ୍ଞାସା ଉତ୍ପନ୍ନ ହୋଇଯାଏ ତାହାହେଲେ ସେହି ନାସ୍ତିକକୁ ମଧ ଭଗବତ୍ କୃପାରେ ଜ୍ଞାନ ମିଳିଯାଏ । ଯାହାଙ୍କ ଦ୍ୱାରା ପ୍ରକାଶ ମିଳୁଛି, ଜ୍ଞାନମିଳୁଛି, ସଠିକ୍ ମାର୍ଗର ସନ୍ଧାନ ମିଳୁଛି, ନିଜ କର୍ତ୍ତବ୍ୟର ନିର୍ଦ୍ଧାରଣ କରାଯାଇ ପାରୁଛି, ନିଜର ଧ୍ୟେୟ ଦେଖାଯାଇ ପାରୁଛି, ତାହା ଗୁରୁ-ତତ୍ତ୍ୱ ଅଟେ । ସେହି ଗୁରୁ-ତତ୍ତ୍ୱ ପ୍ରତ୍ୟେକଙ୍କ ହୃଦୟରେ ବିରାଜମାନ, ସେହି ଗୁରୁ-ତତ୍ତ୍ୱର ପ୍ରକାଶ ଯେଉଁ ବ୍ୟକ୍ତି, ଶାସ୍ତ୍ର ଆଦିରେ ହୋଇଥାଏ, ତାହାଙ୍କୁ ହିଁ ନିଜର ଗୁରୁ ବୋଲି ଗ୍ରହଣ କରିବା ଉଚିତ୍ ।

ବାସ୍ତବରେ ଭଗବାନ୍ ହିଁ ସମସ୍ତଙ୍କର ଗୁରୁ ଅଟନ୍ତି, କାରଣ ସଂସାରରେ ଯେକୌଣସି ଜ୍ଞାନ, ପ୍ରକାଶ ମିଳୁଛି ତାହା

ଭଗବାନଙ୍କଠାରୁ ହିଁ ମିଳୁଛି ସେହି ଜ୍ଞାନର ଅଭିବ୍ୟକ୍ତି ଯେଉଁ ବ୍ୟକ୍ତିଙ୍କଠାରେ ବା ଯେଉଁ ଶାସ୍ତ୍ର ମାଧ୍ୟମରେ ପ୍ରକଟ ହେଉଅଛି, ଅର୍ଥାତ୍ ଯେଉଁ ବ୍ୟକ୍ତି, ଶାସ୍ତ୍ର ଇତ୍ୟାଦିରେ ପ୍ରକଟ ହେଉଅଛି ସେଗୁରୁ । କିନ୍ତୁ ମୂଳରେ ଭଗବାନ ହିଁ ସମସ୍ତଙ୍କ ଗୁରୁ ଅଟନ୍ତି । ଗୀତାରେ ଭଗବାନ କହିଅଛନ୍ତି । ମୁଁ ହିଁ ସର୍ବଭାବରେ ଦେବତା ଓ ମହର୍ଷିମାନଙ୍କର ଆଦି ଅର୍ଥାତ୍ ତାଙ୍କର ଉତ୍ପାଦକ, ସଂରକ୍ଷକ, ଶିକ୍ଷକ ଅଟେ- **'ଅହମାଦିର୍ହି ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ'** (ଗୀତା ୧୦/୨) ଅର୍ଜୁନମଧ ବିରାଟ ରୂପର (ଭଗବାନଙ୍କର) ସ୍ତୁତି କରିବା ସମୟରେ କହିଅଛନ୍ତି କି ''ଭଗବାନ ଆପଣ ହିଁ ସମସ୍ତଙ୍କର ଗୁରୁ ଅଟନ୍ତି । ଗରୀୟ ସେ (୧୧/୩୭) ! **ଗୁରୁର୍ଗରୀୟାନ୍** (ଗୀତା **୧୧/୪୩**) ଏଣୁ ସାଧକ ଗୁରୁ ଖୋଜିବାର କୌଣସି ଆବଶ୍ୟକତା ନାହିଁ । ତାକୁ କେବଳ 'କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍' ଅନୁସାରେ ଭଗବାନ ଶ୍ରୀକୃଷ୍ଣଙ୍କୁ ହିଁ ନିଜର ଗୁରୁ ଏବଂ ତାହାଙ୍କ ବାଣୀ ଗୀତାକୁ ତାଙ୍କର ମନ୍ତ୍ର, ଉପଦେଶ ମାନି ତାଙ୍କ ଆଜ୍ଞାନୁସାରେ ସାଧନାରେ ତତ୍ପରତାପୂର୍ବକ ଲାଗିଯିବା ଆବଶ୍ୟକ । ଯଦି ସାଧକର ଲୌକିକ ଦୃଷ୍ଟିକୋଣରୁ ଗୁରୁଙ୍କର ବିଶେଷ ଆବଶ୍ୟକତା ଥାଏ, ତାହାହେଲେ ସେହି ଜଗଦ୍‌ଗୁରୁ ସ୍ୱୟଂ ଗୁରୁଙ୍କର ସାକ୍ଷାତ୍ କରାଇଦେବେ; କାରଣ ସେ ଭକ୍ତଙ୍କର ଯୋଗ-କ୍ଷେମ ବହନକାରୀ ଅଟନ୍ତି— **'ଯୋଗକ୍ଷେମଂ ବହାମ୍ୟହମ୍'** (୯/୨୨)

# ଜ୍ଞାତବ୍ୟ

ବାସ୍ତବିକ୍ ଗୁରୁ ସେ ଅଟନ୍ତି, ଯେ ଅନ୍ୟମାନଙ୍କୁ ନିଜର ଶିଷ୍ୟ କରନ୍ତିନାହିଁ, ବିରଂ ଗୁରୁରୂପରେ ତିଆରି କରିଦିଅନ୍ତି । ଅର୍ଥାତ୍ ତତ୍ତ୍ୱଜ୍ଞ ଓ ଜୀବନ୍ମୁକ୍ତରେ ପରିଣତ କରିଦିଅନ୍ତି, ସଂସାରର ଉଦ୍ଧାର କର୍ତ୍ତାରେ ପରିଣତ କରିଦିଅନ୍ତି, ଏହିପରି ଗୁରୁ, ଏହି ସଂସାରକୁ ଅସଂଖ୍ୟ ଗୁରୁ ଉପହାର ଦିଅନ୍ତି ।

ବାସ୍ତବରେ ଯେ ମହାପୁରୁଷ (ଗୁରୁ) ସେ ଶିଷ୍ୟ ତିଆରି କରନ୍ତି ନାହିଁ । ତାହାଙ୍କ ହୃଦୟରେ କଦାପି ଏହିପରି ଭାବ ରହେ ନାହିଁ କି ''ଯିଏ ମୋର ଶିଷ୍ୟତ୍ୱ ସ୍ୱୀକାର କରିବ ତାହାକୁ ମୁଁ ଜ୍ଞାନ ପ୍ରଦାନ କରିବି ।'' ହଁ ସେହି ମହାପୁରୁଷଙ୍କଠାରୁ ଯେଉଁ ବ୍ୟକ୍ତି ଜ୍ଞାନ ଲାଭ କରନ୍ତି, ସେହିବ୍ୟକ୍ତି ତାଙ୍କୁ ଗୁରୁଭାବରେ ସ୍ୱୀକାର କରିନିଅନ୍ତି, କେହି ସ୍ୱୀକାର କରନ୍ତୁ କିମ୍ବା ନ କରନ୍ତୁ, ଯେଉଁ ବିଷୟରେ ଯାହାଙ୍କଠାରୁ ଯେଉଁ ଜ୍ଞାନ ପ୍ରାପ୍ତ ହୋଇଅଛି, ସେହି ବିଷୟରେ ସେ ଗୁରୁ ହୋଇଗଲେ । ଯାହାଙ୍କଠାରୁ ଆମ୍ଭମାନଙ୍କୁ ଶିକ୍ଷା ମିଳେ ବା ଲାଭହୁଏ, ଜୀବନର ସତ୍‌ପଥ ମିଳେ ଏହିପରି ମାତା, ପିତା, ଶିକ୍ଷକ, ଆଚାର୍ଯ୍ୟ, ଏମାନେ ସମସ୍ତେ 'ଗୁରୁ' ଶବ୍ଦର ଅନ୍ତର୍ଗତ ।

ମନୁଷ୍ୟ ଯେ କୌଣସି ବ୍ୟକ୍ତିଙ୍କୁ ଗୁରୁ କରି ଯଦି କହେ ଯେ "ମୁଁ ସଗୁରା ହୋଇଗଲି ଅର୍ଥାତ୍ ମୁଁ ଗୁରୁ କରିନେଇଛି, ମୁଁ ନିଗୁରା ନୁହେଁ ଅର୍ଥାତ୍ ଗୁରୁହୀନ ନୁହେଁ, ଏବଂ ଏହାଦ୍ୱାରା ସେ ଯଦି ସନ୍ତୁଷ୍ଟ ହୋଇଥାଏ; ତାହାହେଲେ ତାର ଆଧ୍ୟାତ୍ମିକ ଉନ୍ନତିରେ ଅନ୍ତରାୟ ସୃଷ୍ଟି ହୁଏ । କାରଣ, ତଦ୍ଦ୍ୱାରା ସେ ଅନ୍ୟ କାହାରିକୁ ନିଜର ଗୁରୁବୋଲି ମାନେନାହିଁ, ଅନ୍ୟର ସତ୍ସଙ୍ଗ କରେନାହିଁ, ଅନ୍ୟର ବ୍ୟାଖ୍ୟାନ ବିଶେଷ ପ୍ରବଚନ ଶୁଣେ ନାହିଁ, ତେଣୁ ତାହାର କଲ୍ୟାଣରେ ବିଶେଷ ବାଧା ଜନ୍ମିଥାଏ । ବାସ୍ତବରେ ଯିଏ ନିଜର କଲ୍ୟାଣ ଚାହଁନ୍ତି, ସେ କାହାରିକୁ ଗୁରୁ କରି ଗୋଟିଏ ଯାଗାରେ ଅଟକି ରହନ୍ତି ନାହିଁ, ବରଂ ନିଜର ମୁକ୍ତି ପାଇଁ ସର୍ବଦା ଜିଜ୍ଞାସୁ ହୋଇ ରହନ୍ତି । ଯେ ପର୍ଯ୍ୟନ୍ତ ବୋଧ ପ୍ରାପ୍ତି କିମ୍ୱା ଉପଲବ୍ଧି ନହୁଏ ସେ ପର୍ଯ୍ୟନ୍ତ ସେ କଦାପି ସନ୍ତୋଷ ଲାଭ କରିପାରନ୍ତି ନାହିଁ, ମାତ୍ର ଏତିକି ନୁହେଁ, ବୋଧିପ୍ରାପ୍ତି ହେଲେ ମଧ୍ୟ ଏହା ସନ୍ତୋଷଭାବ ପରିବର୍ତ୍ତେ ପରବଶତା ସୃଷ୍ଟି କରିଥାଏ ।

ପୁରାତନ କର୍ମଦ୍ୱାରା, ପ୍ରାରବ୍ଧ ଦ୍ୱାରା, ଯେଉଁ ଫଳମିଳେ, ତଦ୍ଦ୍ୱାରା ଅନୁକୂଳ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼େ, ସେଥିରେ ସନ୍ତୁଷ୍ଟ ରହିବା ଉଚିତ୍, କିନ୍ତୁ ନୂତନ ଉଦ୍ୟମ (ପୁରୁଷାର୍ଥ) କରିବା କ୍ଷେତ୍ରରେ ଓ ପରମାତ୍ମାଙ୍କୁ ଲାଭ କରିବାକ୍ଷେତ୍ରରେ

କେବେହେଁ ସନ୍ତୁଷ୍ଟ ହେବା ଉଚିତ୍ ନୁହେଁ । ଏଣୁ ଯେ ପର୍ଯ୍ୟନ୍ତ ବୋଧ ନ ଜନ୍ମେ, ସେ ପର୍ଯ୍ୟନ୍ତ ପ୍ରକୃତ ଜିଜ୍ଞାସୁ କୌଣସି ପରିସ୍ଥିତିରେ ଅଟକିବା କଥା ନୁହେଁ, ଯଦି କୌଣସି ମହାପୁରୁଷଙ୍କ ସଙ୍ଗରେ ଅଥବା କୌଣସି ସମ୍ପ୍ରଦାୟରେ ରହିବାଦ୍ୱାରା ବୋଧ ବା ଜ୍ଞାନ ଜନ୍ମିନାହିଁ ତାହାହେଲେ ସେହି ସଂଗକୁ ବା ସମ୍ପ୍ରଦାୟକୁ ତ୍ୟାଗ କରିବା ବା ସମ୍ପ୍ରଦାୟର ପରିବର୍ତ୍ତନ କରିବା ଫଳରେ କୌଣସି ଦୋଷ ଲାଗେ ନାହିଁ ।

ସନ୍ଥ-ମହାତ୍ମା ଏହିପରି କରିଅଛନ୍ତି । ଯଦି ଜିଜ୍ଞାସା ତୀବ୍ର ରହେ ଏବଂ ସେହି ସମ୍ପ୍ରଦାୟକୁ ପରିବର୍ତ୍ତନ କରିବାପାଇଁ ଇଚ୍ଛା ନହୁଏ, ତେବେ ଭଗବାନ ଜୋର୍ କରି ତାହା ବଦଳାଇ ଦିଅନ୍ତି ଓ ତଦ୍ୱାରା ସମସ୍ତ କାର୍ଯ୍ୟ ଠିକ୍ ହୋଇଯାଏ ।

**ପ୍ରଶ୍ନ- ବିଦ୍ୟାଗୁରୁ, ଶିକ୍ଷାଗୁରୁ, ଏବଂ ସଦ୍ ଗୁରୁଙ୍କ ମଧ୍ୟରେ ପାର୍ଥକ୍ୟ କଣ ?**

**ଉତ୍ତର:—** ଯାହାଙ୍କଠାରୁ ବିଦ୍ୟା-ଶିକ୍ଷା ଗ୍ରହଣ କରାଯାଏ, ସେ 'ବିଦ୍ୟାଗୁରୁ' ଅଟନ୍ତି । ଯାହାଙ୍କଠାରୁ ଯଜ୍ଞୋପବୀତ ଗ୍ରହଣ କରାଯାଏ ତୁଳସିମାଳ ଗ୍ରହଣ କରାଯାଏ ଦିକ୍ଷା ଗ୍ରହଣ କରାଯାଏ । ସେ 'ଦୀକ୍ଷାଗୁରୁ' ଅଟନ୍ତି । ଯାହାଙ୍କଠାରୁ ସତ୍ୟ-ତତ୍ତ୍ୱର ବୋଧ (ଜ୍ଞାନ) ହୁଏ, ସେ 'ସଦ୍‌ଗୁରୁ' ଅଟନ୍ତି । ସଦ୍‌ଗୁରୁ ଯେ କୌଣସି

ବର୍ଣ୍ଣବା ଆଶ୍ରମର ହୋଇପାରିବେ । ମହାଭାରତରେ କୁହାଯାଇଅଛି—

ପ୍ରାପ୍ୟଜ୍ଞାନଂ ବ୍ରାହ୍ମଣାଦ୍ କ୍ଷତ୍ରିୟାଦ୍ ବା
ବୈଶ୍ୟାଚ୍ଛୁଦ୍ରାଦପି ନୀଚାଦଭୀକ୍ଷ୍ଣମ୍ ।
ଶ୍ରଦ୍ଧାତବ୍ୟଂ ଶ୍ରଦ୍ଧଧାନେନ ନିତ୍ୟଂ
ନ ଶ୍ରଦ୍ଧିନଂ ଜନ୍ମମୃତ୍ୟୁ ବିଶେତାମ୍ ।
(ମହାଭାରତ ଶାନ୍ତିଂ ୩୧୮/୮୮)

'ବ୍ରାହ୍ମଣ, କ୍ଷତ୍ରିୟ,ବୈଶ୍ୟ, ଶୁଦ୍ର ଅଥବା ନୀଚ ବର୍ଣ୍ଣରେ ଉତ୍ପନ୍ନ ହୋଇଥିବା ପୁରୁଷଙ୍କଠାରୁ ମଧ ଯଦି ଜ୍ଞାନ ଲାଭ ହୁଏ ତାହାହେଲେ ଶ୍ରଦ୍ଧାଳୁମନୁଷ୍ୟ ଜ୍ଞାନ ଲାଭକରି ସଦା-ସର୍ବଦା ତାଙ୍କ ଉପରେ ଶ୍ରଦ୍ଧା ରଖିବା ଆବଶ୍ୟକ । ଯାହା ହୃଦୟରେ ଶ୍ରଦ୍ଧା ଅଛି ।

ତାଙ୍କୁ ବାରମ୍ବାର ଜନ୍ମ-ମରଣ ଚକ୍ରରେ ଆବର୍ତ୍ତିତ ହେବାକୁ ପଡ଼େନାହିଁ ।

**ପ୍ରଶ୍ନ- ଗୁରୁଙ୍କୁ କିପରି ଚିହ୍ନାଯାଏ ?**

**ଉତ୍ତର:—** ଗୁରୁଙ୍କୁ ଚିହ୍ନିବା ଶିଷ୍ୟ ପକ୍ଷରେ ସମ୍ଭବ ନୁହେଁ । ଯିଏ ବଡ଼ ସେ ଛୋଟକୁ ଚିହ୍ନିପାରନ୍ତି, ଛୋଟ କିପରି ବଡ଼କୁ ଚିହ୍ନି ପାରିବ ? ତେବେ ଯାହା ସଙ୍ଗରେ ସମ୍ପର୍କ କଲେ ଦୈବୀ ଭାବ ବଢ଼େ,

ଆସ୍ତିକ ଭାବ ବଢ଼େ ଏବଂ ନିଜର ଆଚରଣ ଉନ୍ନତି ହୁଏ, ସେ ଆମ୍ଭମାନଙ୍କ ପାଇଁ ଗୁରୁ ଅଟନ୍ତି ।

**ପ୍ରଶ୍ନ- ଶରୀରର ନାମ ଗୁରୁ ନୁହେଁ, ତତ୍ତ୍ୱରନାମ- ଏହାର ତାତ୍ପର୍ଯ୍ୟ କଣ ?**

ଉତ୍ତର:- ଗୁରୁଙ୍କର ସହାୟତାରେ ଯେତେବେଳେ ଶିଷ୍ୟର ଅନ୍ତର ବିକଶିତ ହୁଏ, ଜ୍ଞାନ ପ୍ରାପ୍ତିହୁଏ, ସେତେବେଳେ ତାଙ୍କୁ 'ଗୁରୁ' କୁହାଯାଏ । ସେତେବେଳେ ତାଙ୍କୁ ଗୁରୁବୋଲି ମାନିବା ଓ ସମ୍ମାନ କରିବା, ପୂଜା କରିବା ଶିଷ୍ୟର କର୍ତ୍ତବ୍ୟ । ବାସ୍ତବରେ ଗୁରୁ ହେଉଛନ୍ତି ତତ୍ତ୍ୱଜ୍ଞାନ, କାରଣ ଶିଷ୍ୟର ତତ୍ତ୍ୱଜ୍ଞାନ ପ୍ରାପ୍ତି ହେବାଫଳରେ ଗୁରୁ— ସଂଜ୍ଞା ସିଦ୍ଧି ହୁଏ । ଏଣୁ ଭାଗବତରେ କୁହାଯାଇଛି ଯେ ଗୁରୁଙ୍କଠାରେ ମନୁଷ୍ୟ ବୁଦ୍ଧି ଏବଂ ମନୁଷ୍ୟଠାରେ ଗୁରୁବୁଦ୍ଧି ହେବା ମହାନ ଅପରାଧ । ସନ୍ଥ-ମହାତ୍ମା କହିଅଛନ୍ତି-

**ଯୋ ତୂ ଚେଲା ଦେହକୋ, ଦେହ ଖେହ କୀ ଖାନ ।**
**ଯୋ ତୂ ଚେ଼ଲା ସବଦ କୋ, ସବଦ ବ୍ରହ୍ମକର ମାନ ।।***

---

* ସନ୍ଥ-ମହାତ୍ମା ଶିଷ୍ୟକୁ ଉପଦେଶ ପ୍ରଦାନ କରି କହିଅଛନ୍ତି ଯଦି ତୁ ଏହି ବିନାଶଶୀଳ ଶରୀରର ଚେ଼ଲା ତାହାହେଲେ ଏ ଶରୀରତ ମଳମୂତ୍ର ଉତ୍ପନ୍ନ କରୁଥିବା ଏକ ଯନ୍ତ୍ର । ଏହାଠାରେ ମମତା କଣ କରୁଅଛ ? କିନ୍ତୁ ଯଦି ତୁ 'ଶବ୍ଦ' ଉପଦେଶର ଚେ଼ଲା ତାହାହେଲେ ସେ ଶବ୍ଦ ହିଁ ପରମାତ୍ମାଙ୍କ ସ୍ୱରୂପ ଅଟେ ।

ଅର୍ଥାତ୍ ଶବ୍ଦରେ ହିଁ ଜ୍ଞାନ ହୁଏ ଏବଂ ଶବ୍ଦ ଦ୍ୱାରାହିଁ ତତ୍ତ୍ୱଜ୍ଞାନ ଜନ୍ମି ଥାଏ । ଏଣୁ ଗୁରୁ ପରମାତ୍ମା ତତ୍ତ୍ୱ ହିଁ ଅଟେ ।

**ପ୍ରଶ୍ନ- ଗୁରୁଙ୍କ ବ୍ୟତୀତ ଗତି ହୁଏନାହିଁ, ଜ୍ଞାନ ଲାଭ ହୁଏ ନାହିଁ- ଏକଥା କେତେଦୂର ଠିକ୍ ?**

ଉତ୍ତର- ଏକଥା ଏକବାରେ ଠିକ୍, ନିର୍ଭୁଲ । କିନ୍ତୁ କେବଳ ଗୁରୁ- କରଣ ଦ୍ୱାରା ଅଥବା ସ୍ୱୟଂ ଗୁରୁ ହେବା ଦ୍ୱାରା ଯେ କଲ୍ୟାଣ ଓ ମୁକ୍ତି ହେବ ଏକଥା ଯୁକ୍ତିଯୁକ୍ତ ନୁହେଁ । ଯଦି ଗୁରୁଙ୍କ ହୃଦୟରେ ଏହିପରି ଭାବ ରହେଯେ, "ମୋର ବହୁତ ଶିଷ୍ୟ ହୁଅନ୍ତୁ, ମୋର ଏକ ସମ୍ପ୍ରଦାୟ (ଗୋଷ୍ଠି) ହେଉ, ମୁଁ ଜଣେ ସମ୍ମାନନୀୟ ପ୍ରତିଷ୍ଠିତ ବ୍ୟକ୍ତି ହୁଏ" ଇତ୍ୟାଦି ଏବଂ ଶିଷ୍ୟର ମଧ ଏହିପରି ଭାବ ରହେଯେ "ଗୋଟିଏ ଚାଦର, ଗୋଟିଏ ନଡ଼ିଆ ଏବଂ ଏକଟଙ୍କା ଦେବାଦ୍ୱାରା ମୋର ଗୁରୁ କରଣ ହୋଇଯିବ ଏବଂ ସେହି ଗୁରୁ ମୋର ସମ୍ପୂର୍ଣ୍ଣ ପାପ ନାଶ କରିଦେବେ" ଇତ୍ୟାଦି, ତାହାହେଲେ ଏହିପରି ଗୁରୁ-ଶିଷ୍ୟ ସମ୍ପର୍କରେ କଲ୍ୟାଣ ହୁଏ ନାହିଁ । କାରଣ ଯେପରି ସାଂସାରିକ ମାତା-ପିତା, ଭାଇ-ଭାଉଜ, ସ୍ତ୍ରୀ-ପୁତ୍ରଙ୍କର ସମ୍ବନ୍ଧ ରହିଅଛି, ସେହିପରି ଗୁରୁଙ୍କ ସହିତ ଅନ୍ୟଏକ ନୂତନ ସମ୍ବନ୍ଧ ହୋଇଥାଏ ।

ଯେଉଁ ମହାପୁରୁଷଙ୍କ ଦର୍ଶନ, ସ୍ପର୍ଶନ, ଭାଷଣ ଏବଂ ଚିନ୍ତନଦ୍ୱାରା ଆମ୍ଭମାନଙ୍କର ସଦ୍‌ଗୁଣ ବୃଦ୍ଧିହୁଏ, ଦୁର୍ଗୁଣ ଦୁରାଚାର ଦୂର ହୁଏ, ଶାନ୍ତି ମିଳେ, ହୃଦୟରେ ଦୈବୀ ସମ୍ପତ୍ତିର ଆଗମନ ସ୍ୱତଃ ହୁଏ, ଯାହାଙ୍କ ବଚନଦ୍ୱାରା ଆମ୍ଭମାନଙ୍କ ହୃଦୟର ଶଂକା ଦୂର ହୁଏ, ଶଂକାର ସମାଧାନ ମଧ୍ୟ ହୁଏ, ହୃଦୟରେ ପରମାତ୍ମାଙ୍କ ଦିଗକୁ ଗତି ହୁଏ ପାରମାର୍ଥିକ କଥା ପ୍ରିୟ ଲାଗେ, ପାରମାର୍ଥିକ ପଥ ସଠିକ୍ ଭାବେ ଦେଖିବାକୁ ମିଳେ, ଏହିପରି ଗୁରୁଙ୍କ ଦ୍ୱାରାହିଁ ଆମ୍ଭମାନଙ୍କର କଲ୍ୟାଣ ହୁଏ । ଯଦି ଏପରି ଗୁରୁ (ସନ୍ଥ-ମହାପୁରୁଷ) ନମିଳନ୍ତି ତାହାହେଲେ ଯାହାଙ୍କ ସଂଗଦ୍ୱାରା ଆମେ ସାଧନାରେ ଲାଗିରହି ପାରିବା, ଆମର ପାରମାର୍ଥିକ ରୁଚି ସୁରକ୍ଷିତ ରହିବ, ଏହିପରି ସାଧକଙ୍କ ସହିତ ସମ୍ବନ୍ଧ କରିବା ଆବଶ୍ୟକ । କିନ୍ତୁ ତାଙ୍କ ସହିତ ସମ୍ବନ୍ଧ କେବଳ ପାରମାର୍ଥିକ ହେବା ଆବଶ୍ୟକ, ବ୍ୟକ୍ତିଗତ ନୁହେଁ । ପୁଣି ଭଗବାନ ଏହିପରି ପରିସ୍ଥିତି, ଘଟଣା ଜନ୍ମାଇବେ ଯଦ୍ଦ୍ୱାରା କି ଆମକୁ ସେହି ସମ୍ବନ୍ଧ ତ୍ୟାଗକରି ଅନ୍ୟସ୍ଥାନକୁ ଯିବାପାଇଁ ପଡ଼ିବ ଏବଂ ସେଠାରେ ଆମକୁ ପ୍ରକୃତ ସନ୍ଥ-ମହାପୁରୁଷ ମିଳିଯିବେ, ସେ ସନ୍ଥ ସାଧୁବେଶରେ କିମ୍ବା ଗୃହସ୍ଥ ଆଶ୍ରମରେ ଥିଲେ ମଧ୍ୟ ତାଙ୍କ ସଙ୍ଗେ ସମ୍ପର୍କ ସ୍ଥାପନ କରିବା ଦ୍ୱାରା ଆମର ବିଶେଷ ଲାଭ ହୋଇଥାଏ । ତାତ୍ପର୍ଯ୍ୟ ଏହିଯେ ଭଗବାନ ପ୍ରଧାନ ଅଧ୍ୟାପକଙ୍କ

ଭଳି ଅଟନ୍ତି ଓ ସମୟ ଅନୁସାରେ ଶ୍ରେଣୀର ପରିବର୍ତ୍ତନ କରାଇ ଦିଅନ୍ତି । ଏଣୁ ଭଗବାନଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ କରି ତତ୍ପରତା ଓ ଉତ୍ସାହ ପୂର୍ବକ ଆମ୍ଭେମାନେ ସାଧନାରେ ଲାଗିଯିବା ଆବଶ୍ୟକ । ଶ୍ରୀମଦ୍‌ଭଗବତ ଗୀତାରେ ଭଗବାନ କହିଅଛନ୍ତି, ଯେଉଁବ୍ୟକ୍ତି ମୋର ଆଶ୍ରୟ ନେଇ ଚେଷ୍ଟାକରନ୍ତି, ସେ ସବୁ କିଛି ଜାଣି ପାରନ୍ତି (୭/୨୯) । ଏଣୁ ଭଗବାନଙ୍କ ଉପରେ ବିଶ୍ୱାସ ରଖି ସାଧନ-ସମ୍ବନ୍ଧରେ, ଭଗବତ୍ ସମ୍ବନ୍ଧରେ କଥା ଶ୍ରବଣ କରିବା ଆବଶ୍ୟକ ଏବଂ ସତ୍‌କର୍ମ, ସତ୍‌ଚର୍ଚ୍ଚା ସତ୍ ଚିନ୍ତନ କରି ତଥା ସମସ୍ତଙ୍କ ସହିତ ସଦ୍‌ଭାବ ରଖି ସାଧନା କରିବା ଉଚିତ୍ । ପୁଣି କୌଣସି ସନ୍ଥ-ମହାପୁରୁଷଙ୍କଠାରୁ, କୌଣସି ଶାସ୍ତ୍ରରୁ, କୌଣସି ଘଟଣା-ପରିସ୍ଥିତି ଇତ୍ୟାଦିରୁ ଅକସ୍ମାତ୍ ପରମାତ୍ମାତତ୍ତ୍ୱର ବୋଧ ଜାଗ୍ରତ ହୋଇଯିବ ।

ଗୁରୁ ମିଳିଲେ, ମାତ୍ର ଜ୍ଞାନ ଲାଭ ହେଲାନାହିଁ; ତାହାହେଲେ ବୁଝିବାକୁହେବ ପ୍ରକୃତ ଗୁରୁ ମିଳିନାହାଁନ୍ତି । ଅସଲ ଗୁରୁ ମିଳିଗଲେ ଓ ସାଧକର ସାଧନାରେ ତତ୍ପରତା ଆସିଗଲେ ଜ୍ଞାନ ଲାଭ ହେବହିଁ ହେବ । କଦାପି ଏହିପରି ହୋଇପାରିବନାହିଁ, କି ସାଧକ ସାଧନପରାୟଣ ହୋଇଥିବ, ଏବଂ ଗୁରୁ ଅସଲି ମିଳିଯିବେ କିନ୍ତୁ ଜ୍ଞାନ ହେବନାହିଁ !

ଗୋଟିଏ ପ୍ରବଚନ ଅଛି:—

**ପାରସ କେରା ଗୁଣ କିସା, ପଲଟ୍ୟା ନହାଁ ଲୋହା ।**
**କୈ ତୋ ନିଜ ପାରସ ନହାଁ, କୈ ବିଚ୍ ରହା ବିଛୋହା ॥***

ତାତ୍ପର୍ଯ୍ୟ ଏହିଯେ ଯଦି ଶିଷ୍ୟ ଗୁରୁଙ୍କ ଆଗରେ ହୃଦୟ ଖୋଲି ସରଳତାପୂର୍ବକ ପ୍ରଶ୍ନ କରିବ, କିଛି ଗୁପ୍ତ ରଖିବନାହିଁ ତାହାହେଲେ ଶିଷ୍ୟଠାରେ ଗୁରୁ ଶକ୍ତିର ପ୍ରକଟ ହୋଇଯିବ, ଯାହାଫଳରେ ସେହିଶକ୍ତିଦ୍ୱାରା ଶିଷ୍ୟର କଲ୍ୟାଣ ହୋଇଯିବ ।

ଗୁରୁତତ୍ତ୍ୱ ନିତ୍ୟ ଅଟେ ଏବଂ ସେହି ତତ୍ତ୍ୱ କୌଣସି ଘଟଣାରୁ, କୌଣସି ପରିସ୍ଥିତିରୁ, କୌଣସି ପୁସ୍ତକରୁ କୌଣସି ବ୍ୟକ୍ତିଙ୍କଠାରୁ ମିଳିପାରିବ । ଏଣୁ ଗୁରୁଙ୍କ ବିନା ଜ୍ଞାନ ହୁଏନାହିଁ— ଏହି କଥା ନିରାଟ ସତ୍ୟ ।

---

*ଯଦି ଲୁହା ସ୍ୱର୍ଣ୍ଣରେ ପରିଣତ ହେଲାନାହିଁ ତାହାହେଲେ ସେପାରସ (ପଥର) ନୁହେଁ, କିମ୍ବାପାରସଏବଂ ଲୁହା ମଧ୍ୟରେ ବ୍ୟବଧାନ ରହିଅଛି କିମ୍ବା ଲୁହା, ଲୁହା ନୁହେଁପାରସପଥର ଠିକ୍ ହୋଇଥିବ, ଲୁହା ମଧ ଠିକ୍ ହୋଇଥିବ ତେବେ ଲୁହା ପରିଣତ ହେବନାହିଁ- ଏହା କିପରି ହୋଇପାରିବ ?

**ପ୍ରଶ୍ନ- ନିଜର କଲ୍ୟାଣ (ମୁକ୍ତି) ପାଇଁ ଗୁରୁ କରଣ କ'ଣ ଆବଶ୍ୟକ ?**

**ଉତ୍ତର:—** କଲ୍ୟାଣ ପାଇଁ ହିଁ ଗୁରୁ ଆବଶ୍ୟକ । କିନ୍ତୁ ତିଆରି ହୋଇଥିବା ଗୁରୁଙ୍କଦ୍ୱାରା କଲ୍ୟାଣ ହୁଏନାହିଁ । ଯାହାଙ୍କଦ୍ୱାରା କଲ୍ୟାଣ ହୁଏ, ତାଙ୍କଠାରେ ଗୁରୁପଣିଆ ସ୍ୱତଃ ଆସିଯାଏ । ତାତ୍ପର୍ଯ୍ୟ ଏହା ଯେ, କଲ୍ୟାଣପାଇଁ ଗୁରୁ ତିଆରି କରିବାରେ କୌଣସି ଆବଶ୍ୟକ ନାହିଁ, ବରଂ ଯାହାଙ୍କଠାରୁ ଯେତେ ଅଂଶରେ ଜ୍ଞାନ ମିଳିଥାଏ ସେତେଅଂଶରେ ସେ ଆମର ଗୁରୁ ହୋଇଗଲେ, ଆମେ ମାନୁ ବା ନମାନୁ, ଜାଣୁବା ନ ଜାଣୁ । ଯାହାଙ୍କ ହୃଦୟରେ କଲ୍ୟାଣର ଅଦମ୍ୟ ଇଚ୍ଛା ଏବଂ ପ୍ରକୃତ ଜିଜ୍ଞାସା ଜନ୍ମେ ତାହାଙ୍କୁ ସ୍ୱତଃ ବୋଧ (ଜ୍ଞାନ) ପ୍ରାପ୍ତି ହୋଇଯାଏ; ଯେପରି- ଦୁଇଜଣ ବ୍ୟକ୍ତି ପରସ୍ପର ମଧ୍ୟରେ କାହାରି ପ୍ରସଙ୍ଗରେ କଥା ହେଉଥିବାବେଳେ, ସେକଥାକୁ ଶୁଣିବା ଦ୍ୱାରା ଅଥବା ରାସ୍ତାରେ ଯାଉଥିବା ସମୟରେ ଅନ୍ୟବ୍ୟକ୍ତିଙ୍କ ଘରର ବାର୍ତ୍ତାଳାପ ଶୁଣିବାଦ୍ୱାରା ମଧ୍ୟ ଜ୍ଞାନ ପ୍ରାପ୍ତି ହୋଇଯାଏ, କୌଣସି ପୁସ୍ତକକୁ ଖୋଲି ପଢୁପଢୁ ସେଥିରୁ ଏପରି ଅଦ୍ଭୁତ ବାଣୀ ମିଳିଯାଏ ଯାହାଦ୍ୱାରା ଜ୍ଞାନ ମିଳିଥାଏ । ସନ୍ଥ- ମହାପୁରୁଷ, ଭଗବଦ୍ଭକ୍ତଙ୍କ ଚରିତ୍ର, ଇତିହାସ ଇତ୍ୟାଦି ପଠନ-ପାଠନ ଦ୍ୱାରା ଏପରି କଥା ମିଳିଯାଏ ଯାହାଦ୍ୱାରା ଜ୍ଞାନପ୍ରାପ୍ତି ହୋଇଥାଏ । ତାତ୍ପର୍ଯ୍ୟ

ଏହା ଯେ ଜ୍ଞାନ ଲାଭରେ କୌଣସି ବ୍ୟକ୍ତି କାରଣ ନୁହଁନ୍ତି, ବରଂ ନିଜର ଏକାଗ୍ରତା ଏବଂ ତୀବ୍ର ଜିଜ୍ଞାସା ହିଁ ଏକମାତ୍ର କାରଣ ।

ଗୁରୁଙ୍କୁ ପାଇବା ମନୁଷ୍ୟ ଇଚ୍ଛାଉପରେ ସମ୍ପୂର୍ଣ୍ଣ ନିର୍ଭର କରେନାହିଁ । ତାହାର ଯାହା ନିଜସ୍ୱ ଅର୍ଥାତ୍ ନିଜର ଏକାଗ୍ରତା ଏବଂ ଜିଜ୍ଞାସା ଜାଗ୍ରତ କରିବା ହେଲା ତାହାର ଏକମାତ୍ର କାର୍ଯ୍ୟ । ଭଗବାନଙ୍କ ଉପରେ ଭରସାରଖି ତଥା ନିର୍ଭୟ, ଶୋକହୀନ, ନିଶ୍ଚିନ୍ତ ଏବଂ ନିଃଶଙ୍କ ହୋଇ ନିଜ ବାଟରେ ଚାଲିବାକୁ ହେବ ।

**ପ୍ରଶ୍ନ- ସ୍ତ୍ରୀ ଗୁରୁ ଗ୍ରହଣ କରିବା ଉଚିତ୍ କି ନୁହେଁ ?**

ଉତ୍ତର – ସ୍ତ୍ରୀ ପାଇଁ ପତିଦେବହିଁ ଗୁରୁ ଅଟନ୍ତି । ଏଣୁ ସେ ପତିଙ୍କ ବ୍ୟତିତ ଅନ୍ୟ କୌଣସି ପୁରୁଷକୁ ଗୁରୁ କରିବା ଉଚିତ୍ ନୁହେଁ- 'ପତିରେକୋ ଗୁରୁଃ ସ୍ତ୍ରୀଣାମ୍' । ବର୍ତ୍ତମାନ ସମାଜରେ ଯେତେଦୂର ସମ୍ଭବ, ସ୍ତ୍ରୀ ପରପୁରୁଷ ସହିତ କୌଣସି ପ୍ରକାରର ସମ୍ବନ୍ଧ ରଖିବା ଅନୁଚିତ୍ ।

**ପ୍ରଶ୍ନ- ଗୁରୁ ହେବାପାଇଁ ଯୋଗ୍ୟ କିଏ ?**

ଉତ୍ତର – ତତ୍ତ୍ୱଜ୍ଞ ଜୀବନ୍ମୁକ୍ତ ମହାପୁରୁଷ ହିଁ ଗୁରୁ ହେବାପାଇଁ ଯୋଗ୍ୟ ଅଟନ୍ତି । ଏଣୁ ଯେ ପର୍ଯ୍ୟନ୍ତ ତତ୍ତ୍ୱଜ୍ଞାନ ଲାଭ ହୋଇନାହିଁ ଭଗବତ୍ ପ୍ରାପ୍ତି ହୋଇନାହିଁ, ସେ ପର୍ଯ୍ୟନ୍ତ ନିଜ ହୃଦୟରେ ଗୁରୁ

ଭାବ ଆଣିବା ଅନୁଚିତ୍ । ହଁ ଯଦି କୌଣସି ସାଧକ କଲ୍ୟାଣ ବିଷୟରେ ପ୍ରଶ୍ନ କରନ୍ତି ତାହାହେଲେ ନିଜର ଜ୍ଞାନ ଅନୁସାରେ ସରଳତା ପୂର୍ବକ ତାହାକୁ ମାର୍ଗ ପ୍ରଦର୍ଶନ କରାଇଦେବା ଉଚିତ୍ । ଯିଏ ଯେଉଁ ବିଷୟରେ ଜ୍ଞାନ ପ୍ରଦାନ କରି ଅଜ୍ଞାନ-ଅନ୍ଧକାର ଦୂର କରନ୍ତି, ସେହି ବିଷୟରେ ସେ ଗୁରୁ ହୋଇଯାଆନ୍ତି, ସେ ବିଧି-ବିଧାନ ପୂର୍ବକ ଦୀକ୍ଷା ପ୍ରଦାନ କରନ୍ତୁ ବା ନ କରନ୍ତୁ ।ଅସଲ ଗୁରୁ ସେ ଅଟନ୍ତି, ଯାହାଙ୍କ ଉପଦେଶ ଦ୍ୱାରା ବୋଧପ୍ରାପ୍ତି ହୋଇଯାଏ, ତତ୍ତ୍ୱଜ୍ଞାନ ଲାଭ ହୁଏ । ତାପରେ ଆଉ କୌଣସି ଗୁରୁର ଆବଶ୍ୟକତା ରହେନାହିଁ । ସେ ଗୁରୁ ହେବାପାଇଁ ଯୋଗ୍ୟ ଅଟନ୍ତି ଯେ କାହାକୁ ହେଲେ ନିଜର ଚେଲା ତିଆରି କରନ୍ତିନାହିଁ, ନିଜର ଅଧୀନ କରନ୍ତି ନାହିଁ । ଯିଏ ସମସ୍ତଙ୍କୁ ଗୁରୁରେ ପରିଣତ କରିପାରନ୍ତି, ସେ ବାସ୍ତବରେ ସମସ୍ତଙ୍କର ଗୁରୁ ହେବାପାଇଁ ଯୋଗ୍ୟ ଅଟନ୍ତି ।

ଶାସ୍ତ୍ରରେ ଯେଉଁଠି ଗୁରୁଙ୍କର ବର୍ଣ୍ଣନା ଅଛି, ସେଠାରେ କୁହାଯାଇଛି ଯେ ଗୁରୁ ଶ୍ରୋତ୍ରିୟ ଏବଂ ବ୍ରହ୍ମନିଷ୍ଠ ହେବା ଆବଶ୍ୟକ । ବେଦ, ଶାସ୍ତ୍ର, ପୁରାଣ ଇତ୍ୟାଦିକୁ ଯେଭଲ ଭାବେ ଜାଣନ୍ତି ତାଙ୍କୁ 'ଶ୍ରୋତ୍ରିୟ' ଏବଂ ବ୍ରହ୍ମକୁ ଯେ ଜାଣନ୍ତି ତାଙ୍କୁ 'ବ୍ରହ୍ମନିଷ୍ଠ' କୁହାଯାଏ । ଯେ କେବଳ ଶ୍ରୋତ୍ରିୟ, ବ୍ରହ୍ମନିଷ୍ଠ ନୁହଁନ୍ତି, ସେ ଅନ୍ୟକୁ ଶାସ୍ତ୍ର ଅଧ୍ୟୟନ କରାଇପାରିବେ, କିନ୍ତୁ ପରମାତ୍ମାତତ୍ତ୍ୱ ବୋଧ

କରାଇପାରିବେ ନାହିଁ । ଯେ କେବଳ ବ୍ରହ୍ମନିଷ୍ଠ, ଶ୍ରୋତ୍ରିୟ ନୁହନ୍ତି, ସେ ଅନ୍ୟକୁ ପରମାତ୍ମାତତ୍ତ୍ୱ ବୋଧ କରାଇପାରିବେ, କିନ୍ତୁ ବିଭିନ୍ନ ପ୍ରକାରର ଶଙ୍କାସବୁ ସମାଧାନ କରିବାରେ ପ୍ରାୟ ଅସମର୍ଥ ହେବେ । ହଁ ଶଂକା ସମୂହର ସମାଧାନ କରି ନ ପାରିଲେ ମଧ୍ୟ ତାଙ୍କଠାରୁ କୌଣସି କମ୍ ରହେନାହିଁ; କୌଣସି ଶଂକା, ସନ୍ଦେହ ରହେନାହିଁ । ଏଣୁ କୌଣସି ଶିଷ୍ୟ ତର୍କ-ବିତର୍କ ନ କରି ତତ୍ତ୍ୱକୁ ଯାଣିବା ପାଇଁ ଇଚ୍ଛାପ୍ରକାଶ କଲେ, ସେ ବ୍ରହ୍ମନିଷ୍ଠ ଗୁରୁ ଶିଷ୍ୟକୁ ତତ୍ତ୍ୱବୋଧ କରାଇ ପାରିବେ ।

**ପ୍ରଶ୍ନ- ଶିଷ୍ୟ ହେବାପାଇଁ ଯୋଗ୍ୟ କିଏ ?**

**ଉତ୍ତର:—** ଯାହାଙ୍କ ହୃଦୟରେ ଶରୀରର ଆରାମ ଇଚ୍ଛା ନାହିଁ, ବଞ୍ଚିବାର ଇଚ୍ଛା ମଧ୍ୟ ନାହିଁ, ବରଂ ଯାହା ହୃଦୟରେ କେବଳ ମୁକ୍ତିର ଇଚ୍ଛା ଅଛି, ସେ ଶିଷ୍ୟ ହେବା ପାଇଁ ଯୋଗ୍ୟ ଅଟନ୍ତି । ନିଜ କାମନାକୁ ରଖି କେହିହେଲେ ଶିଷ୍ୟ ହୋଇପାରିବେ ନାହିଁ; ଯିଏ କାମନାର ଦାସ ସେ ଅନ୍ୟର ଶିଷତ୍ୱ କିପରି ଗ୍ରହଣ କରିପାରିବ ?

ବାସ୍ତବରେ ଗୁରୁ ବିଦ୍ୟମାନ, ଭଗବାନ ବିଦ୍ୟମାନ, ଜିଜ୍ଞାସା ବିଦ୍ୟମାନ ଏବଂ ଯୋଗ୍ୟତା ମଧ୍ୟ ବିଦ୍ୟମାନ, କିନ୍ତୁ ଅନିତ୍ୟ ବସ୍ତୁ, ବ୍ୟକ୍ତି, ଅବସ୍ଥା, ପରିସ୍ଥିତି, ମାନ, ବଡ଼ାଇ, ଆଦର-ସତ୍କାର ଇତ୍ୟାଦିରେ ଆସକ୍ତି ହେତୁ ତାହା ପ୍ରକଟିତ ହେବାରେ ବାଧା ଜନ୍ମେ ।

ଏହିସବୁ ଅନିତ୍ୟ ବସ୍ତୁର ପ୍ରତି ଆସକ୍ତି ଦୂର କରିବା ସାଧକର କାମ; କାରଣ ସେ ନିଜେ ଆସକ୍ତି ଆନୟନ କରନ୍ତି । ଏଣୁ ଗୀତାରେ କୁହାଯାଇଅଛି କି ନିଜ ଦ୍ୱାରା ହିଁ ନିଜକୁ ଉଦ୍ଧାର କରିବା ଉଚିତ୍ ।

'ଉଦ୍ଧରେଦାତ୍ମନାତ୍ମାନଂ' (ଗୀତା ୬/୫)

**ପ୍ରଶ୍ନ : ଗୁରୁକରଣର ଯେଉଁ ପ୍ରଥା ପ୍ରଚଳିତ ଅଛି ତାହା କ'ଣ ?**

**ଉତ୍ତର—** ଗୁରୁ କରଣ ପନ୍ଥା ଏକ ସାମ୍ପ୍ରଦାୟିକ ପ୍ରଣାଳୀ । ଯେଉଁଠି ସାମ୍ପ୍ରଦାୟିକତା ରହିଅଛି, ସେଠାରେ ବୋଧପ୍ରାପ୍ତି ହେବାର ସମ୍ଭାବନା ନାହିଁ, ତତ୍ତ୍ୱଜ୍ଞାନ ପ୍ରାପ୍ତିର ସମ୍ଭାବନା ନାହିଁ । କାରଣ-ସମ୍ପ୍ରଦାୟରେ ଆଗ୍ରହ ରଖିବା ଦ୍ୱାରା ବୋଧପ୍ରାପ୍ତି ହୁଏ ନାହିଁ ଏବଂ ଯେଉଁଠି ବୋଧପ୍ରାପ୍ତି ହୁଏ ସେଠାରେ ସମ୍ପ୍ରଦାୟର ଆଗ୍ରହ ରହେ ନାହିଁ ।

ହୃଦୟରେ ନିଜ କଲ୍ୟାଣର ଇଚ୍ଛା ତୀବ୍ର ହେବା ଫଳରେ ଭିତରେ ରହିଥିବା ସାମ୍ପ୍ରଦାୟିକତାର ଆଗ୍ରହ ଭସ୍ମ ହୋଇଯାଏ ଏବଂ ବୋଧପ୍ରାପ୍ତି ହୋଇଯାଏ, କିନ୍ତୁ ସେହି ବୋଧପ୍ରାପ୍ତି କିପରି ହେବ ତାହା କେହି କହିପାରିବେ ନାହିଁ; କାହିଁକି ନା ଭଗବାନଙ୍କର ଶିଖାଇବା ପ୍ରଣାଳୀ ଭିନ୍ନ-ଭିନ୍ନ, ଯାହା କେବଳ ଭଗବାନ ହିଁ ଜାଣନ୍ତି ।

**ପ୍ରଶ୍ନ - ଯଦି ସାମ୍ପ୍ରଦାୟିକତା ଦ୍ୱାରା ବୋଧପ୍ରାପ୍ତି ହୁଏ ନାହିଁ, ତାହାହେଲେ ବିଭିନ୍ନ ସମ୍ପ୍ରଦାୟର ଗଠନ କାହିଁକି ହୋଇଅଛି ?**

ଉତ୍ତର - ଲୋକଚକ୍ଷୁରେ ଯେଉଁବ୍ୟକ୍ତି ବଡ଼ ହୋଇଛନ୍ତି ଏବଂ ଯାହାଙ୍କୁ ଲୋକମାନେ ବଡ଼ କହି ସ୍ୱୀକାର କରିଛନ୍ତି ଏବଂ ପରେ ସେହି ବ୍ୟକ୍ତିଙ୍କ ଆଜ୍ଞାପାଳକ ଶିଷ୍ୟମଧ ସେହିପରି ହୋଇଅଛନ୍ତି, ତାଙ୍କର ସିଦ୍ଧାନ୍ତକୁ ନେଇ ସମ୍ପ୍ରଦାୟ ସୃଷ୍ଟି ହୋଇଅଛି ।

ବେଦ, ଶାସ୍ତ୍ର, ଭଗବାନ ଏବଂ ଭଗବାନଙ୍କ ଅବତାରକୁ ମାନୁଥିବା ସମ୍ପ୍ରଦାୟ ବହୁତ ରହିଅଛି; କିନ୍ତୁ ସେହି ସମ୍ପ୍ରଦାୟ ମଧ୍ୟରୁ କେଉଁ ସମ୍ପ୍ରଦାୟ କେତେଦୂର ଉନ୍ନତି କରିଅଛି ତାହା କିଏ କହିପାରିବ ? ଏଣୁ ଯେଉଁ ବ୍ୟକ୍ତି ନିଜର ଉଦ୍ଧାର ଚାହାଁନ୍ତି, ସେ କେବଳ ନିଜର ଉଦ୍ଧାର ପାଇଁ ହିଁ ଆଗ୍ରହ ରଖିବା ଉଚିତ ସମ୍ପ୍ରଦାୟ ପାଇଁ ନୁହେଁ ।

କୌଣସି ସମ୍ପ୍ରଦାୟ ବୈଦିକ ଓ ଶାସ୍ତ୍ର ସମ୍ମତ ହେବା ବହୁତ ଭଲ କଥା, କିନ୍ତୁ ସେହି ସମ୍ପ୍ରଦାୟକୁ ଆସିବା ଫଳରେ କଲ୍ୟାଣ ହୋଇଯିବ, ଏପରି କୌଣସି ନିୟମ ନାହିଁ । ତାତ୍ପର୍ଯ୍ୟ ଏହା କି କଲ୍ୟାଣ ବିଷୟକ କଥା ବ୍ୟକ୍ତିଗତ, ନିଜ ଜିଜ୍ଞାସାର ଅଧୀନ,

କୌଣସି ସମ୍ପ୍ରଦାୟର ଅଧୀନ ନୁହେଁ । ଅତଏବ ମନୁଷ୍ୟ କୌଣସି ସମ୍ପ୍ରଦାୟରେ ଆଗ୍ରହ ରଖିବା ଅନୁଚିତ୍, କାରଣ ତୀବ୍ର ଜିଜ୍ଞାସା ହେବା ଫଳରେ ହିଁ ନିଜର କଲ୍ୟାଣ ହୁଏ ।

**ପ୍ରଶ୍ନ- 'ଗୁରୁ ଗୋବିନ୍ଦ ଦୋନୋଂ ଖଡ଼େ, କାକେ ଲାଗୁଁ ପାୟ ।**
**ବଲିହାରୀ ଗୁରୁ ଦେବକୀ, ଗୋବିନ୍ଦ ଦିୟୋ ବତାୟ ॥**

ଅର୍ଥାତ୍ ଆଗରେ ଗୁରୁ ଗୋବିନ୍ଦ ଦ୍ୱୟ ଉପସ୍ଥିତ । ଦୁହିଁଙ୍କ ମଧ୍ୟରୁ ପ୍ରଥମେ ପୂଜନୀୟ କିଏ ? ସେହିପରି ଗୁରୁଦେବ ଧନ୍ୟ ଯେ ଗୋବିନ୍ଦଙ୍କ ସାକ୍ଷାତକାର୍ କରାଇ ଦିଅନ୍ତି — ଏହିପରି କହିବାର ତାତ୍ପର୍ଯ୍ୟ କ'ଣ ?

**ଉତ୍ତର—** ଗୁରୁଙ୍କ ଦ୍ୱାରା ଯଦି ଈଶ୍ୱରଙ୍କର ସାକ୍ଷାତ୍କାର ହୁଏ । ତାହାହେଲେତ ସେ ପ୍ରଶଂସାର୍ହ ଓ ନମସ୍ୟ । କାରଣ ସେ ଭଗବାନଙ୍କର ସାକ୍ଷାତ୍ କରାଇଦେଲେ । ଯଦି ତାଙ୍କ ଦ୍ୱାରା ଦର୍ଶନ ହୋଇପାରିଲା ନାହିଁ ତେବେ ଏପରିକରିବା ଏକପ୍ରକାର ପ୍ରତାରଣା ।

ଯେପରି ଯଦି ପ୍ରଶ୍ନ କରାଯାଏ "ବାପ ପ୍ରଥମେ ଜନ୍ମ ହୁଏ କି ପୁଅ ?" ପ୍ରାୟତଃ ଏହିପରି ଉତ୍ତର ମିଳିବ ଯେ ପ୍ରଥମେ ବାପ ଜନ୍ମ ହୁଏ ଏବଂ ପରେ ପୁଅ । ପରନ୍ତୁ ବାସ୍ତବରେ ଦେଖାଯାଏ ଯେ ପୁତ୍ର ଜନ୍ମ ହେବା ପରେ ତାକୁ ବାପ ସଂଜ୍ଞା ମିଳେ । ଯଦି ପୁତ୍ର ନ

ହୁଏ ତାହା ହେଲେ ତା'ର ବାପ ସଂଜ୍ଞା ସିଦ୍ଧ ହୁଏ ନାହିଁ । ସେହିପରି ଶିଷ୍ୟର ବୋଧ (ଜ୍ଞାନ) ଓ ଇଶ୍ୱର ସାକ୍ଷାତ୍‌କର ହେଲେ ହିଁ ତାଙ୍କର ଗୁରୁ ସଂଜ୍ଞା ସିଦ୍ଧ ହୁଏ ।

**ପ୍ରଶ୍ନ - ଗୁରୁଙ୍କ ପୂଜା କରିବା ଧ୍ୟାନ କରିବା, ତାଙ୍କର ଅଇଁଠା ଗ୍ରହଣ କରିବା, ଚ଼ରଣ ଧୂଳି ନେବା, ଚ଼ରଣାମୃତ ନେବା କେତେଦୂର ଠିକ୍ ?**

**ଉତ୍ତର-** ଏ ସମସ୍ତ କେବଳ ଭଗବାନଙ୍କ ପ୍ରତି ହିଁ କରିବା ଉଚିତ୍; ଯେପରି ଭଗବାନଙ୍କ ଶ୍ରୀ ବିଗ୍ରହର ପୂଜନ କରିବା; ଭଗବାନଙ୍କୁ ଧ୍ୟାନ କରିବା ଭଗବାନଙ୍କ ଭୋଗ ଲାଗିଥିବା ପ୍ରସାଦ ସେବନ କରିବା; ଭଗବାନଙ୍କ ଲୀଳା ସ୍ଥଳର ଧୂଳିକୁ ପ୍ରେମ ସହିତ ମସ୍ତକରେ ଧାରଣ କରିବା, ଶାଳଗ୍ରାମଙ୍କର ଚ଼ରଣାମୃତ ପାନ କରିବା, ଭଗବାନଙ୍କ ଚ଼ରଣ କମଳରୁ ନିଃସୃତ ମା ଗଙ୍ଗାଙ୍କୁ ଆଦର କରିବା ଇତ୍ୟାଦି । ତାତ୍ପର୍ଯ୍ୟ ଏହି ଯେ, ସର୍ବୋପରି ମହାନ୍ ଏବଂ ପବିତ୍ର କେବଳ ଭଗବାନ ଅଟନ୍ତି । ତାଙ୍କ ସମାନ ଅନ୍ୟ କେହି ନାହିଁ, ହୋଇନାହିଁ, ହେବ ନାହିଁ ଏବଂ ହୋଇପାରିବ ନାହିଁ । ଏଣୁ ପ୍ରଭୁଙ୍କ ପାଦପଦ୍ମରେ ଆଶ୍ରିତ ହୋଇ କେବଳ ତାଙ୍କର ପୂଜନ, ଧ୍ୟାନ ଆଦି କରିବା ଆବଶ୍ୟକ ।

ଭଗବାନଙ୍କର ଶରୀର ଜ୍ଞାନମୟ ଚିନ୍ମୟ ଏବଂ ଅବିନାଶୀ, କିନ୍ତୁ ମହାତ୍ମାଙ୍କ ଶରୀର ପଞ୍ଚଭୌତିକ ହୋଇଥିବା ହେତୁ ଜଡ଼ ଏବଂ ବିନାଶୀ । ଭଗବାନ ସର୍ବବ୍ୟାପୀ; ତେଣୁ ସେ ଚିତ୍ରରେ ମଧ୍ୟ ବିଦ୍ୟମାନ । କିନ୍ତୁ ମହାତ୍ମାଙ୍କ ସର୍ବବ୍ୟାପକତା (ଶରୀର ଠାରୁ ଭିନ୍ନ) ଭଗବାନଙ୍କ ସର୍ବବ୍ୟାପକତାର ହିଁ ଅନ୍ତର୍ଗତ ଏକ ଭଗବାନ ମଧ୍ୟରେ ସକଳ ମହାତ୍ମା ବିରାଜିତ; ଏଣୁ ଭଗବାନଙ୍କର ପୂଜନ କରିବା ଦ୍ୱାରା ମହାତ୍ମାଗଣଙ୍କର ପୂଜା ହୋଇଯାଉଅଛି । ଯଦି ମହାତ୍ମାଙ୍କ ଅସ୍ଥି-ମଜ୍ଜାବିଶିଷ୍ଟ ଶରୀର ତଥା ଚିତ୍ରର ପୂଜନ ପରମ୍ପରା ଆରମ୍ଭ ହୁଏ, ତାହାହେଲେ ଭଗବାନଙ୍କ ପୂଜାରେ ବାଧା ଆସିଥାଏ । ଏହା ସନ୍ଥ-ମହାତ୍ମାଙ୍କ ସିଦ୍ଧାନ୍ତର ସମ୍ପୂର୍ଣ୍ଣ ବିରୋଧ କାରଣ ମହାତ୍ମାଗଣ ସଂସାରରେ ଭଗବାନଙ୍କ ପ୍ରତି ଆଗ୍ରହ ଜନ୍ମାଇବା ପାଇଁ ଅବତାର ଗ୍ରହଣ କରନ୍ତି । ନିଜଠାରେ ଆଗ୍ରହ ଜନ୍ମାଇବା ପାଇଁ ନୁହେଁ । ଯେଉଁମାନେ ମନୁଷ୍ୟମାନଙ୍କୁ ନିଜର ପୂଜା, ଧ୍ୟାନ ଇତ୍ୟାଦିରେ ନିୟୋଜିତ କରନ୍ତି ସେମାନେ ପାଷଣ୍ଡ । ପାଖଣ୍ଡି ।

ଯଦି ବାସ୍ତବିକ ଦୃଷ୍ଟିକୋଣରୁ ଦେଖାଯାଏ ତାହାହେଲେ ଶରୀର ମଳ-ମୂତ୍ର ଉତ୍ପନ୍ନ କରୁଥିବା ଏକ ଯନ୍ତ୍ର ଅଟେ । ଯଦି ଏହାକୁ ବଢ଼ିଆ-ରୁ-ବଢ଼ିଆ ଭୋଜନ ଦିଆଯାଏ । ତାହାହେଲେ ତାହା ମଳ ହୋଇ ବାହାରକୁ ବାହାରିଯାଏ ଏବଂ ଗଙ୍ଗାଜଳ ଭଳି ପବିତ୍ର ଜଳମୂତ୍ର

ହୋଇ ବାହାରି ଯାଏ । ଶରୀରରେ ପ୍ରାଣଥିବା ପର୍ଯ୍ୟନ୍ତ ଏହା ମଳମୂତ୍ର ଉତ୍ପନ୍ନ କରିବାର ଗୋଟିଏ ଯନ୍ତ୍ର ଏବଂ ପ୍ରାଣ ଚାଲିଯିବା ପରେ ଏହା ମୂର୍ଦ୍ଧାର ଅଟେ । ବାସ୍ତବରେ ଏହି ଶରୀର ପ୍ରତିକ୍ଷଣ ବିନାଶ ଦିଗକୁ ଗତି କରୁଛି, ଅର୍ଥାତ୍ ମୂର୍ଦ୍ଧାର ହେଉଅଛି, ଏଥିରେ ରହିଥିବା ବାସ୍ତବିକ୍ ତତ୍ତ୍ୱ ( **'ଚୈତନଜୀବାତ୍ମା'**) ଅଟେ । ଏହାର ଚିତ୍ର ଉଠାଇବା ଅସମ୍ଭବ । ଚିତ୍ର ଏହି ଶରୀରର ନିଆଯାଏ, ଯାହା ପ୍ରତିକ୍ଷଣ ପରିବର୍ତ୍ତନ ହେଉଅଛି, ନଷ୍ଟ ହେଉଅଛି । ଏଣୁ ଶରୀର ମଧ୍ୟ ଚିତ୍ର ଉଠାଇବା ପରେ ସେହିଭଳି ରହେ ନାହିଁ ଯେପରି ଚିତ୍ର ନେବା ସମୟରେ ଥିଲା । ଏଣୁ ଚିତ୍ରର ପୂଜା ଅସତ୍ (ନାଶବାନ୍) ର ପୂଜା ଅଟେ । ଶରୀର ଚିତ୍ରରେ ପ୍ରାଣ ନ ଥାଏ, ଏହି ହେତୁ ଶରୀରର ଚିତ୍ର ମୁର୍ଦ୍ଧାରର ମୁର୍ଦ୍ଧାର ବା ଶବର ଶବ ଅଟେ ।

ଆମ୍ଭେମାନେ ଯେଉଁ ମନୁଷ୍ୟକୁ ମହାତ୍ମା ବୋଲି ମାନୁ ତାଙ୍କର ନିଜ ଶରୀର ଠାରୁ ସମ୍ବନ୍ଧ-ବିଚ୍ଛେଦ ହୋଇଥିବା ହେତୁ ସେ ମହାତ୍ମା ପଦବାଚ୍ୟ ହୁଅନ୍ତି, ଶରୀରରେ ସମ୍ବନ୍ଧ ରହିବା ହେତୁ ନୁହେଁ । ମହାତ୍ମା କଦାପି ଶରୀରରେ ସୀମିତ ରହନ୍ତି ନାହିଁ । କାରଣ ତାହାଙ୍କର ଅବିନାଶୀ ସିଦ୍ଧାନ୍ତ ଏବଂ ବଚନ ଉପରେ ହିଁ ଶ୍ରଦ୍ଧା ରହିଥାଏ । ନାଶବାନ୍ ଶରୀର ପ୍ରତି ନୁହେଁ । ନାଶବାନ୍ ଶରୀର ଏବଂ ନାମରେ ମୋହ ଉତ୍ପନ୍ନ ହୁଏ; ଶ୍ରଦ୍ଧା ନୁହେଁ । ଏଣୁ ଭଗବାନଙ୍କର ଅବିନାଶୀ,

ଦିବ୍ୟ, ଅଲୌକିକ ଶ୍ରୀ ବିଗ୍ରହ (ମୂର୍ତ୍ତି) ର ପୂଜା, ଧ୍ୟାନ ଇତ୍ୟାଦିକୁ ଛାଡ଼ି ନାଶବାନ ଭୌତିକ ଶରୀରର ପୂଜା, ଧ୍ୟାନାଦି କରିବା ଫଳରେ କେବଳ ନିଜର ଜୀବନ ଯେ ନିରର୍ଥକ ହୁଏ ତାହାଁ ନୁହେଁ, ଏହାଦ୍ୱାରା ନିଜକୁ ବିଶ୍ୱାସଘାତ କରାଯାଇଥାଏ ।

ଆଜି-କାଲି ଯୁଗରେ ଗୁରୁଙ୍କ ପୂଜନ, ଧ୍ୟାନ କରିବା ବିଷୟରେ ବିଶେଷ ସାବଧାନ ରହିବା ଆବଶ୍ୟକ; କାରଣ ଏଥିରେ ବିଶ୍ୱାସଘାତ ହେବାର ବିଶେଷ ସମ୍ଭାବନା ରହିଅଛି । ନିଜର ପୂଜା କରାଉଥିବା, ନିଜ ନାମର ଜପ କରାଉଥିବା ଏବଂ ନିଜ ଶରୀର ଧ୍ୟାନ କରାଉଥିବା, ନିଜର ଉଚ୍ଛିଷ୍ଟ, ଚରଣଧୂଳି, ଚରାଣାମୃତ ଦେଉଥିବା ବ୍ୟକ୍ତିଙ୍କଠାରୁ ଯେତେଦୂର ସମ୍ଭବ ଦୂରେଇ ରହିବା ଉଚିତ୍ । କାରଣ ଏହାଙ୍କ ଦ୍ୱାରା ଠକାମିରେ ପଡ଼ିବାର ବିଶେଷ ସମ୍ଭାବନା ଥାଏ; ଯେପରି କପଟି ମୁନିଙ୍କ ଦ୍ୱାରା ପ୍ରତାପଭାନୁ ରାଜା, ସାଧୁବେଶଧାରୀ ରାବଣ ଦ୍ୱାରା ମାତା ସୀତା ଏବଂ କାଲନେମି ରାକ୍ଷସ ଦ୍ୱାରା ହନୁମାନ ପ୍ରତାରିତ ହୋଇଥିଲେ । ଯେ ସାଧକ ଅଟନ୍ତି, ପାରମାର୍ଥିକ ମାର୍ଗରେ ଗତି କରୁଅଛନ୍ତି, ସେ ନିଜର ପୂଜା ଆଦି କରାଇବା ଅନୁଚିତ କାରଣ ଏହାଫଳରେ ତପୋବଳ କ୍ଷୀଣ ହୋଇଥାଏ ଏବଂ ପାରମାର୍ଥିକ ଉନ୍ନତିରେ ବାଧା ଲାଗିଥାଏ । ଏଣୁ ସାଧକ ଏହି ସମସ୍ତ ବିଷୟରୁ ଦୂରେଇ ରହିବା ଓ ସାବଧାନ ରହିବା

ଉଚିତ୍ । ସାଧୁମାନେ ଏସବୁ ବିଷୟରେ ବିଶେଷ ଭାବେ ସାବଧାନ ରହିବା ଆବଶ୍ୟକ କାରଣ ନିଜର ପୂଜା ଆଦି କରାଉଥିବା ସାଧକର ତପ, ସାଧନ ପୂର୍ଣ୍ଣତା ଲାଭ କରେ ନାହିଁ; ଯେପରି ଅଧିକ ଦୁଧ ଦେଉଥିବା ଗାଈ ପରିପୁଷ୍ଟ ହୁଏ ନାହିଁ ।

''ଦୁଗ୍ଧା ଗୌରିବ ସୀଦତି'' ।

**ପ୍ରଶ୍ନ - କେତେକ ସାଧୁ ନିଜକୁ ଭଗବାନ ବୋଲି କହୁଅଛନ୍ତି, ଏହା କ'ଣ ଠିକ୍ ?**

**ଉତ୍ତର-** ନିଜକୁ ଭଗବାନ ବୋଲି କହୁଥିବା ବ୍ୟକ୍ତି ପ୍ରାୟତଃ ପାଖଣ୍ଡ ହୋଇଥାଆନ୍ତି । ସେ କେବଳ ନିଜର ପୂଜା, ପ୍ରତିଷ୍ଠା, ଲାଭ; ନିଜର ସ୍ୱାର୍ଥ ସିଦ୍ଧି ପାଇଁ, ହିଁ ଏହିପରି ଅଭିନୟ କରନ୍ତି । ଭଗବାନଙ୍କର ସ୍ୱଭାବ ନୁହେଁ ନିଜକୁ ଭଗବାନ ନାମରେ ପ୍ରଚାର କରିବା, ପ୍ରସିଦ୍ଧ କରିବା । ସୁତରାଂ ଯେଉଁମାନେ ନିଜକୁ ଭଗବାନ ବୋଲି କହୁଅଛନ୍ତି । ସେ କଦାପି ଭଗବାନ ହୋଇପାରିବେ ନାହିଁ । ଆମ ହିନ୍ଦୁ ସଂସ୍କୃତିରେ ମୁଖ୍ୟତଃ ତିନୋଟି ରାମାୟଣ ଅଛି- ବାଲ୍ମୀକି ରାମାୟଣ, ଅଧ୍ୟାତ୍ମ ରାମାୟଣ ଏବଂ ରାମଚ଼ରିତ ମାନସ । ଏଥିମଧ୍ୟରୁ ବାଲ୍ମୀକି ରାମାୟଣରେ କର୍ମରପ୍ରଧାନତା, ଅଧ୍ୟାତ୍ମରାମାୟଣରେ ଜ୍ଞାନର ପ୍ରଧାନତା ଏବଂ ରାମଚ଼ରିତ ମାନସରେ

ଭକ୍ତିର ପ୍ରଧାନତା ଦେଖାଯାଏ । ଏହି ତିନିଗୋଟି ରାମାୟଣରେ କୌଣସି ଠାରେ ରାମ ନିଜକୁ ଭଗବାନ ବୋଲି ପରିଚ଼ୟ ଦେଇନାହାଁନ୍ତି । ହନୁମାନ ପଚାରିଲେ—

**କୀ ତୁମ୍ହ ଅଖିଲ ଭୁବନ ପତି ଲୀହ୍ନ ମନୁଜ ଅବତାର ॥**

(ମାନସ ୪/୧)

କ'ଣ ଆପଣ ଅଖିଳ ବ୍ରହ୍ମାଣ୍ଡ ନାୟକ ମନୁଷ୍ୟ ଅବତାର ଗ୍ରହଣ କରିଅଛନ୍ତି ? ଏହାର ଉତ୍ତରରେ ଭଗବାନ ରାମ ନିଜର ପରିଚ଼ୟ ଦେଲେ କୋସଲେସ ଦସରଥ କେ ଜାଏ । ହମ ପିତୁ ବଚ଼ନ ମାନିବନ ଆଏ ॥ (ମା.୪/୨/୧) କୋସଳାଧିପତି ରାଜା ଦସରଥଙ୍କର ଆମେ ଦୁହେଁ ପୁତ୍ର । ଏବଂ ପିତାଙ୍କ ଆଜ୍ଞାପାଳନ ନିମିତ୍ତ ବନରେ ବିଚ଼ରଣ କରୁଅଛୁ ।

ଭଗବାନ ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧରେ କ୍ଷତ୍ରୀୟ ମାନଙ୍କ ମଧ୍ୟରେ ନିଜକୁ ସାରଥି-ଭାବେ ସ୍ୱୀକାର କରି ନିମ୍ନ ବର୍ଣ୍ଣର କର୍ମ ଗ୍ରହଣ କରିଥିଲେ । ସୁତରାଂ ଯେ ସତ୍ୟ ଭଗବାନ୍ ସେ ଏପରି ଅଭିମାନ କରନ୍ତି ନାହିଁ ଯେ ''ମୁହିଁ ଭଗବାନ''; ତେଣୁ ଯେ କହେ ''ମୁଁ ଭଗବାନ'' ସେ ଭଗବାନ ନୁହଁନ୍ତି । ଯଦି ସେ ଭଗବାନ ହୋଇଥାଆନ୍ତେ ତାହାହେଲେ ନିଜକୁ କାହିଁକି 'ମୁଁ ଭଗବାନ' —

ଏହିପରି ପରିଚୟ ଦିଅନ୍ତେ ? ଭାଗବତରେ ମିଥ୍ୟା ଭଗବାନର ବର୍ଣ୍ଣନା ଅଛି । ସେ କହୁଥିଲା କି 'ମୁଁ ଅସଲି ବାସୁଦେବ' କୃଷ୍ଣ ତ ନ କଲି ବାସୁଦେବ । ଭଗବାନ କୃଷ୍ଣ ମିଥ୍ୟା ବାସୁଦେବଙ୍କୁ ଯୁଦ୍ଧରେ ମାରିଦେଲେ, କିନ୍ତୁ 'ମୁଁ ଅସଲି ବାସୁଦେବ'— ଏହିପରି ନିଜକୁ କହିଲେ ନାହିଁ । ତାତ୍ପର୍ଯ୍ୟ ଏହି ଯେ ନିଜକୁ ଭଗବାନ ବୋଲି କହନ୍ତି ସେ ମିଥ୍ୟା ବାସୁଦେବ ପାଖଣ୍ଡି ଅଟନ୍ତି ବା ମିଥ୍ୟାଚାରୀ ଅଟନ୍ତି ।

**ପ୍ରଶ୍ନ : ଗୁରୁ ହିଁ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱର— (ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁର୍ଗୁରୁର୍ଦେବୋ ମହେଶ୍ୱରଃ)— ଏହି ପରି କହିବାର ତାତ୍ପର୍ଯ୍ୟ କ'ଣ ?**

**ଉତ୍ତର—** ତାତ୍ପର୍ଯ୍ୟ ଏହା ଯେ ଶିଷ୍ୟର ଗୁରୁଙ୍କଠାରେ ମନୁଷ୍ୟଭାବ ନ ହୋଇ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱରଙ୍କ ଭାବନା ହେବା ଉଚିତ୍— ଯେପରି ପତିବ୍ରତା ସ୍ତ୍ରୀର ପତିଙ୍କଠାରେ ଈଶ୍ୱରଭାବ ରହେ, କିନ୍ତୁ ତାହାର ପତି କ'ଣ ସମସ୍ତଙ୍କ ଈଶ୍ୱର ହୋଇଯିବେ ? ସେହିପରି ଶିଷ୍ୟର ନିଜ ଗୁରୁଦେବଙ୍କ ଠାରେ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ଭାବ ରହେ ତ କଣ ସେହିଗୁରୁ ସମସ୍ତଙ୍କ ପାଇଁ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ହୋଇଯିବେ ? ଏହିପରି ଭାବ ରହିବା ଦ୍ୱାରା ଗୁରୁଙ୍କ ଠାରୁ ଶିଷ୍ୟକୁ ବିଶେଷ ଲାଭ ମିଳିଥାଏ; କିନ୍ତୁ ଏହି ଭାବ ହୃଦୟରେ ହେବା ଆବଶ୍ୟକ, ଦେଖାଣିଆ ନୁହେଁ ।

ପ୍ରଶ୍ନ : ଗୁରୁ ଏବଂ ଶିଷ୍ୟର ପରସ୍ପର ପ୍ରତି କର୍ତ୍ତବ୍ୟ କ'ଣ ?

ଉତ୍ତର— ଗୁରୁଦେବଙ୍କ ହୃଦୟରେ ଶିଷ୍ୟର କଲ୍ୟାଣ କିପରି ହେବ ସର୍ବଦା ଏହିପରି ଭାବ ରହିବା ଉଚିତ୍; ଏବଂ ଶିଷ୍ୟର ଉଦ୍ଧାର ପାଇଁ ସେ ସର୍ବଦା ପ୍ରଯତ୍ନ କରିବା ଉଚିତ୍ । ଶିଷ୍ୟର ଏହିପରି ଭାବ ରହିବା ଆବଶ୍ୟକ ଯେ ତା'ଦ୍ୱାରା ଗୁରୁଦେବଙ୍କର ସେବା ହୋଇଯାଉ; ଯେ ପର୍ଯ୍ୟନ୍ତ ତା'ର ସାମର୍ଥ୍ୟ ରହିଅଛି ସେ ପର୍ଯ୍ୟନ୍ତ ତାହାଙ୍କୁ କୌଣସି ପ୍ରକାରର କଷ୍ଟ ନ ହେଉ; ତାଙ୍କର ଉପଦେଶ ଓ ଭାବ ଅନୁସାରେ ମୋର ଜୀବନ ଗଠିତ ହୋଇଯାଉ, ଗୁରୁଦେବଙ୍କର ଯେପରି ଇଚ୍ଛା ହେଉଅଛି ସେ ମୋ ଜୀବନର ସେହିପରି ଉପଯୋଗ କରନ୍ତୁ ।

କୋ ବା ଗୁରୁର୍ଯୋ ହି ହିତୋପଦେଷ୍ଟା

ଶିଷ୍ୟସ୍ତୁ କୋ ଯୋ ଗୁରୁଭକ୍ତ ଏବ ॥ (ପ୍ରଶ୍ନୋତ୍ତରୀ ୭)

ପ୍ରଶ୍ନ— ପ୍ରଥମରୁ ଗୁରୁ ବରଣ କରି ମନ୍ତ୍ରଦୀକ୍ଷା ଗ୍ରହଣ କରିନେଇଅଛୁ, କିନ୍ତୁ ବର୍ତ୍ତମାନ ସେହି ଗୁରୁଙ୍କ ଉପରେ ଶ୍ରଦ୍ଧା ହେଉ ନାହିଁ,— ଏହିପରି ଅବସ୍ଥାରେ କ'ଣ କରିବା ଉଚିତ୍ ?

ଉତ୍ତର— ଯେପରି, କୌଣସି ଘରର ଛାତ ଫାଟିଯାଇଥିଲେ ତା'ଉପରେ ଅଳ୍ପମାଟି ଲଗାଇ ଦେଲେ ସେହି

ମାଟି କେତେ ଦିନ ରହିବ ? ବର୍ଷା ଆସିଲେ ସେହି ଛାତ ଭାଙ୍ଗି ପଡ଼ିବ । ସେହିପରି ଯେଉଁ ଗୁରୁଙ୍କ ପ୍ରତି ହୃଦୟରେ ସଦ୍‌ଭାବ ନାହିଁ, ତାଙ୍କଠାରେ ଦୋଷ ଦର୍ଶନ ହେଉଅଛି, ଯଦି ତାଙ୍କ ଉପରେ ଦେଖାଣିଆ ଶ୍ରଦ୍ଧା ରଖିବା ତା'ହେଲେ ତାହା କେତେଦିନ ରହିବ ! ସେହି ଗୁରୁଙ୍କ ବିରୁଦ୍ଧରେ କୌଣସି କଥା ଶୁଣିବାକୁ ପାଇଲେ ଗୁରୁଭାବ ରହିବ ନାହିଁ ନଷ୍ଟ ହୋଇଯିବ । ଏଣୁ ସେ ଘରକୁ ଆସିଲେ ତାଙ୍କୁ ଆଦର କରନ୍ତୁ, ଭୋଜନ କରାନ୍ତୁ, ଚାଦର, ଲୁଗା-ପଟା ଦେଇଦିଅନ୍ତୁ, କିନ୍ତୁ ନିନ୍ଦା କରନ୍ତୁ ନାହିଁ । ତାହାଙ୍କୁ ହୃଦୟରେ ଗୁରୁବୋଲି ସ୍ୱୀକାର କରନ୍ତୁ ନାହିଁ । ଆପଣଙ୍କର ଯେଉଁଠି ଶ୍ରଦ୍ଧା ବିଶ୍ୱାସ ହେଉଅଛି, ସେପରି ମହାପୁରୁଷ ମାନଙ୍କର ସତ୍‌ସଙ୍ଗ କରନ୍ତୁ ଏବଂ ତାହାଙ୍କ ଉପଦେଶ ଅନୁସାରେ ନିଜର ଜୀବନ ଗଠନ କରନ୍ତୁ । ତାଙ୍କ କହିବା ଅନୁସାରେ ଜୀବନ ଗଠନ କଲେ ନିଜର କଲ୍ୟାଣ ହେବ । ଯଦି ସେ ଅନୁସାରେ ଜୀବନ ଗଠନ କରିବେ ନାହିଁ । ତାହାହେଲେ ସେହି ଗୁରୁଙ୍କ ଉପରେ ମଧ୍ୟ ଦୋଷଦୃଷ୍ଟି ହୋଇଯିବ ! ପୁନଃ ଆପଣ କୌଣସିଠାରେ ସ୍ଥାୟୀ ହୋଇ ରହିପାରିବେ ନାହିଁ ।

**ପ୍ରଶ୍ନ : ଯଦି ଗୁରୁଙ୍କ ଆଚରଣ ଠିକ୍ ନ ହୁଏ ତାହାହେଲେ ଏଭଳି ପରିସ୍ଥିତିରେ କ'ଣ କରିବା ଉଚିତ୍ ?**

ଉତ୍ତର— ଗୁରୁଙ୍କ ଆଚରଣ ଯେପରି ହୋଇଥାଉ ନା କାହିଁକି, ଯଦି ସେହି ଗୁରୁଙ୍କ-ଠାରେ ନିଜର ଦୁର୍ଭାବନା ହୋଇଗଲା ତାହାହେଲେ ତାଙ୍କୁ ତ୍ୟାଗ କରିବା ହିଁ ଠିକ୍; କାରଣ ବର୍ତ୍ତମାନ ସେହି ଗୁରୁଙ୍କ ଦ୍ୱାରା କଲ୍ୟାଣ ହେବା ମିଥ୍ୟା ଅଟେ । ଯାହାଙ୍କ ଠାରେ ଆମର ସଦ୍‌ଭାବନା ରହିଲା ନାହିଁ, ତାଙ୍କ ଦ୍ୱାରା କଲ୍ୟାଣ କିପରି ହେବ ? କିନ୍ତୁ ଯଦି ସେହି ଗୁରୁଙ୍କ ଦ୍ୱାରା ଦିଆଯାଇଥିବା ମନ୍ତ୍ରରେ ଶ୍ରଦ୍ଧା ରହେ ତାହାହେଲେ ସେହି ମନ୍ତ୍ରର ଜପ କରିବା ଆବଶ୍ୟକ । ଯଦି ସେହି ମନ୍ତ୍ର ଉପରେ ଶ୍ରଦ୍ଧା ନ ରହେ ତାହାହେଲେ ଯେଉଁ ମନ୍ତ୍ରରେ ଶ୍ରଦ୍ଧା-ବିଶ୍ୱାସ ହେଉଅଛି ସେହି ମନ୍ତ୍ରର ଜପ କରିବା ଆବଶ୍ୟକ ଏବଂ ନିଜର ହୃଦୟକୁ ସ୍ୱଚ୍ଛ, ନିର୍ମଳ ରଖିବା ଆବଶ୍ୟକ ।

**ପ୍ରଶ୍ନ : ଗୁରୁଙ୍କର ସେବା କ'ଣ ?**

ଉତ୍ତର - ଯାହାଦ୍ୱାରା ଗୁରୁଦେବଙ୍କ ମନରେ ପ୍ରସନ୍ନତା ହେବ ଏବଂ ସେ ନିଜ ହୃଦୟର କଥାକୁ ପ୍ରକାଶ କରିପାରିବେ— ଏହିପରି ବିଶ୍ୱାସର ପାତ୍ର ହେବା ହିଁ ଗୁରୁଦେବଙ୍କ ବାସ୍ତବିକ ସେବା । ଯଦି ତତ୍ତ୍ୱ ପ୍ରାପ୍ତି ପାଇଁ ଶିଷ୍ୟ ଗୁରୁଙ୍କର ସେବା କରେ ତାହାହେଲେ ତାହାକୁ ତତ୍ତ୍ୱ ପ୍ରାପ୍ତି ହୋଇଥାଏ । କିପରି ହୁଏ- ଏହାକୁ ତ କେବଳ ଭଗବାନ ହିଁ ଜାଣନ୍ତି ।

ନିଜେ-ନିଜକୁ ଗୁରୁଦେବଙ୍କ ଚରଣ କମଳରେ ସମର୍ପଣ କରିଦେବା ଅର୍ଥାତ୍ ନିଜ ଅହଂ ଭାବକୁ ସର୍ବଥା ନାଶ କରିଦେବା, ନିଜର କୌଣସି ସ୍ୱତନ୍ତ୍ର ଆଗ୍ରହ ନ ରଖିବା, ପ୍ରାଣକୁ ମଧ୍ୟ ନିଜର ନ ମାନିବା— ଏହା ଗୁରୁ ସେବାର ବାସ୍ତବିକ ଅର୍ଥ ।

**ପ୍ରଶ୍ନ- ଗୁରୁକୃପା କ'ଣ ଏବଂ ଏହାର ପ୍ରାପ୍ତି କିପରି ହୁଏ ?**

ଉତ୍ତର- ଗୁରୁଦେବଙ୍କ ଚିତ୍ତର ପ୍ରସନ୍ନତା ହିଁ ଗୁରୁକୃପା ଅଟେ ଏବଂ ସେହି କୃପା ଗୁରୁଙ୍କର ମନ ଅନୁକୂଳ ହେବା ଦ୍ୱାରା ପ୍ରାପ୍ତ ହୁଏ । ଗୁରୁଙ୍କ କୃପା ଦ୍ୱାରା ନିଶ୍ଚିତ ଲାଭ ହୁଏ । ଗୁରୁକୃପା କଦାପି ନିଷ୍ଫଳ ହୁଏ ନାହିଁ; ଯଦି ପରମାତ୍ମାଙ୍କ ପ୍ରାପ୍ତି ଉଦ୍ଦେଶ୍ୟରେ ହିଁ ଗୁରୁଙ୍କ ସେବା ଓ ଆଜ୍ଞା ପାଳନ କରାଯାଏ ତାହାହେଲେ ବାସ୍ତବରେ ତାହା ପରମାତ୍ମାଙ୍କର ହିଁ ସେବା ଅଟେ । ଏଣୁ ଭଗବତ୍ କୃପାରେ ନିଜ ଉଦ୍ଦେଶ୍ୟର ପୂର୍ତ୍ତି ଅବଶ୍ୟ ହୋଇଯାଏ ।

**ପ୍ରଶ୍ନ- ଗୁରୁକୃପା ଏବଂ ଭଗବଦ୍ କୃପାରେ ଅନ୍ତର କ'ଣ ?**

ଉତ୍ତର- ଏହି ଦୁଇଟି ମଧ୍ୟରେ ବାସ୍ତବିକ କୌଣସି ଅନ୍ତର ନାହିଁ । ଲୌକିକ ଦୃଷ୍ଟିରେ ଭିନ୍ନ-ଭିନ୍ନ ଦେଖାଯାଏ, କିନ୍ତୁ ବାସ୍ତବରେ ଏହା ଏକ ଅଟେ ।

**ପ୍ରଶ୍ନ- ଗୁରୁଙ୍କ ଦୀକ୍ଷା ଏବଂ ଶିକ୍ଷା କ'ଣ ?**

**ଉତ୍ତର-** ଗୁରୁଦେବଙ୍କ ଉପଦେଶ ଅନୁସାରେ ନିୟମ ଧାରଣ କରିବା, ବ୍ରତ ଧାରଣ କରିବା 'ଦୀକ୍ଷା' ଅଟେ ଏବଂ ସେହି ନିୟମ, ବ୍ରତ ଆଦିକୁ ପାଳନ କରିବା, ସେହି ଅନୁସାରେ ନିଜର ଜୀବନ ଗଢ଼ିବା 'ଶିକ୍ଷା' ଅଟେ । ପ୍ରଥମେ ଦୀକ୍ଷା ଦେବା ପରେ ହିଁ ଶିକ୍ଷା ଦିଆଯାଉଥିଲା ଏବଂ ସେହି ଶିକ୍ଷା ଫଳପ୍ରଦ ହେଉଥିଲା; ଉତ୍ତମ ହେଉଥିଲା । କିନ୍ତୁ ଏବେ ଦୀକ୍ଷା ବିନା ହିଁ ଶିକ୍ଷା ପ୍ରଦାନ କରାଯାଉଅଛି, ଯଦ୍ଦ୍ୱାରା ଶିକ୍ଷା ଉତ୍ତମ ହେଉନାହିଁ ।

**ପ୍ରଶ୍ନ-ଗୁରୁ ଦକ୍ଷିଣା କ'ଣ ?**

**ଉତ୍ତର-** ନିଜେ ନିଜକୁ ସମ୍ପୂର୍ଣ୍ଣ ଭାବେ ଗୁରୁଦେବଙ୍କ ଚରଣାରବିନ୍ଦରେ ଅର୍ପଣ କରିଦେବା ଅର୍ଥାତ୍ 'ମୁଁ' ଏବଂ 'ମୋର' ଭାବନାର ବିନାଶ କରିଦେବା ହିଁ ବାସ୍ତବିକ୍ ଗୁରୁ ଦକ୍ଷିଣା । ଗୁରୁ ଦକ୍ଷିଣା ଦେବା ପରେ ଶିଷ୍ୟର ନିଜ କଲ୍ୟାଣ ଚିନ୍ତା ରହେ ନାହିଁ, ବରଂ ସେହି ଚିନ୍ତା ଗୁରୁଦେବଙ୍କର ହିଁ ହୋଇଥାଏ ।

## କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍

ମୋହଶୂନ୍ୟ ବ୍ୟକ୍ତି ହିଁ ବାଳକର ହିତ କରିପାରିବେ । ମୋହିତ ବ୍ୟକ୍ତି ନୁହେଁ । ବୈଦ୍ୟ ବା ଡାକ୍ତର ସଂସାରର ପ୍ରାଣୀମାନଙ୍କୁ

ରୋଗମୁକ୍ତ କରିଥାଆନ୍ତି, କିନ୍ତୁ ନିଜର ସ୍ତ୍ରୀ କିମ୍ବା ପୁତ୍ର ରୋଗଗ୍ରସ୍ତ ହେଲେ ଅନ୍ୟ ବୈଦ୍ୟକୁ ଡାକନ୍ତି । ଆପଣ ବିଚାର କରନ୍ତୁ, ଏପରି କାହିଁକି ହେଉଛି ? ନିଜେ ଭଲ ଡାକ୍ତର ହୋଇଥିଲେ ମଧ୍ୟ ନିଜର ସ୍ତ୍ରୀ ଏବଂ ବାଳକଙ୍କ ଉପରେ ମୋହ ଥିବା ହେତୁ ତାଙ୍କୁ ରୋଗମୁକ୍ତ କରିପାରନ୍ତି ନାହିଁ । ସେମାନଙ୍କର ଚିକିତ୍ସା ମୋହଶୂନ୍ୟ ଡାକ୍ତର ହିଁ କରିପାରିବେ । ଏଣୁ ମୋହରହିତ, ପକ୍ଷପାତ ରହିତ ସନ୍ଥଙ୍କ ଦ୍ୱାରା ଯେତେ ପରିମାଣରେ ଉତ୍ତମ ଶିକ୍ଷା ମିଳେ, ସେତେ ପରିମାଣରେ ଅନ୍ୟମାନଙ୍କ ଦ୍ୱାରା ମିଳେ ନାହିଁ । କିନ୍ତୁ ପରିତାପର ବିଷୟ ଆଜି-କାଲିର ଗୁରୁଜୀ କହୁଛନ୍ତି କି ପ୍ରଥମେ ତୁମେ ମୋର ଚେ଼ଲା ହୋଇଯାଅ ତାହାପରେ ମୁଁ ବଢ଼ିଆ କଥା କହିବି ! ଗୁରୁ-ଚେ଼ଲା ସମ୍ବନ୍ଧ ହେବାପରେ ମୋହ ଆସିଯିବ, ମମତା ଆସିଯିବ, ମୋହ ହେବା ଦ୍ୱାରା ଉଭୟଙ୍କର ପତନ ହିଁ ହେବ—

**ଗୁରୁ ଲୋଭୀ ଶିଷ୍ୟ ଲାଲଚ଼ୀ, ଦୋନୋ ଖେଲେ ଦାଁବ ।**
**ଦୋ ନୋ ଡୂବା 'ପରସରାମ', ବୈଠ ପଥରକୀ ନାଁବ ॥**

ଚେ଼ଲା ବିଚାର କରୁଛି ଗୁରୁ ମହାରାଜଙ୍କୁ ଗୋଟିଏ ଟଙ୍କା ଭେଟି ଦେଇଦେଲେ ମୋର ପୁଣ୍ୟ ହୋଇଯିବ, ବାବାଜୀ ମୋର ସମ୍ପୂର୍ଣ୍ଣ ପାପ ନେଇଯିବେ; ଅପରପକ୍ଷରେ ବାବାଜୀ ବିଚାର କରୁଅଛନ୍ତି, ବିନା ପରିଶ୍ରମରେ ଟଙ୍କାଟିଏ ମିଳୁଛି, ଚେ଼ଲାକୁ ଗୋଟିଏ

କଣ୍ଠି (ତୁଳସୀ ମାଳ) ଦେଇ ଦେଲେ ହାନି ବା କ'ଣ ? ଟଙ୍କାକରେ ତ ପାଞ୍ଚ-ସାତଟି ମାଳ ମିଳୁଅଛି, ମୋର ତ ଲାଭ ହିଁ ଲାଭ । ଏହିପରି କଣ୍ଠି ବାନ୍ଧିବା ଦ୍ୱାରା କଣ ଚେ଼ଲାର କଲ୍ୟାଣ ହୋଇଯିବ ? ଲୋକମାନେ କହୁଛନ୍ତି ଗୁରୁ କରିନେଲେ କଲ୍ୟାଣ ହେବ, ଗୁରୁ କରି ନାହଁ ତ କରି ଦିଅନ୍ତୁ, ଭାଇ ନାହିଁ ତ ଧର୍ମଭାଇ କରି ନିଅନ୍ତୁ, ଭଉଣୀ ନାହିଁ ତ ଭଉଣୀ କରିନିଅନ୍ତୁ । ଯେନ କେନ ପ୍ରକାରେ ପତନ ହୋଇଯାଉ- ଏହିପରି ଉଦ୍ୟୋଗ କରୁଛନ୍ତି । ଗୁରୁ କରିନେଲେ କଣ ହୋଇଯିବ ? କେତେକ କହନ୍ତି ଆମ ଗୁରୁ ମହାରାଜ ବଡ଼, ଅନ୍ୟ କେତେକ କହନ୍ତି, ନା' ନା ଆମ ଗୁରୁଜୀ ବଡ଼, ଏହିପରି ଲୋକଙ୍କର କଲ୍ୟାଣ କିପରି ହେବ ? କାମ ତ କିଛି ନାହିଁ, ଏବେ ଷଣ୍ଢକୁ ଷଣ୍ଢ ଲଢ଼ାଇକର । ରାଜସ୍ଥାନ ଅନ୍ତର୍ଗତ ବିକାନେରରେ ନିଜ ନିଜ ଗ୍ରାମରେ ଗୋଟିଏ-ଗୋଟିଏ ଷଣ୍ଢ ରଖି ସେମାନେ ଅନ୍ୟଗ୍ରାମରେ ଷଣ୍ଢ ସହିତ ଲଢ଼ାଇ କରାନ୍ତି ଏବଂ ମଜା ଦେଖନ୍ତି ଯେ ଦୁଇଜଣଙ୍କ ଭିତରେ ବଳୁଆ କିଏ ? ଏହିପରି କରିବା ଦ୍ୱାରା କ'ଣ କଲ୍ୟାଣ ହେବ ? ସେମାନେ ବିଚାର ମଧ୍ୟ କରୁନାହାଁନ୍ତି ଏବଂ କହୁଛନ୍ତି ଗୁରୁଙ୍କ ବିନା କଲ୍ୟାଣ ହୁଏ ନାହିଁ; ଯେଉଁମାନେ ଗୁରୁ କରିଛନ୍ତି ସେମାନଙ୍କର କଣ କଲ୍ୟାଣ ହୋଇଗଲାଣି ସେମାନେ କଣ କୃତକୃତ୍ୟ ହୋଇଗଲେଣି ? ଯଦି ତାଙ୍କର ଉଦ୍ଧାର ହୋଇନାହିଁ ତାହାହେଲେ ଆମର କିପରି

ହୋଇଯିବ ? ଟିକିଏ ହେଲେ 'ଅକଲ' ତ ରହିବା ଆବଶ୍ୟକ, କିଞ୍ଚିତ୍ ବିଚାର ତ କରିବା ଆବଶ୍ୟକ ? ଏପରି ବିଚାର କରନ୍ତି ନାହିଁ କି ଯେଉଁମାନେ ଗୁରୁ ହୋଇଛନ୍ତି ସେମାନଙ୍କର ଦୁର୍ଦ୍ଦଶା କଣ ? ଗୁରୁ କରିବା ପାଇଁ ପ୍ରତିନିଧି (ଏଜେଣ୍ଟ) ଅଛନ୍ତି । ସେମାନେ ଅନ୍ୟମାନଙ୍କୁ କହନ୍ତି ଯେ ତୁମେ ଆମ ଗୁରୁଜୀଙ୍କୁ ଗୁରୁବୋଲି ସ୍ୱୀକାର କର । କିପରି ଓଲଟା କଥା ? କଣ ଜଣେ ପତିବ୍ରତା ସ୍ତ୍ରୀ ଅନ୍ୟ ସ୍ତ୍ରୀ ମାନଙ୍କୁ "ମୁଁ ପତିଙ୍କୁ ପରମେଶ୍ୱର ମାନୁଛି, ତୁମେ ମଧ୍ୟ ମୋ ପତିଙ୍କୁ ପରମେଶ୍ୱର ମାନ, ତାଙ୍କର ସେବା କର" ଏହିପରି କହେ ? ତୁମେ ମଧ୍ୟ ଆମ ଗୁରୁ ମହାରାଜଙ୍କ ଚେଲା ହୋଇଯାଅ, ଆମ ଗୋଷ୍ଠୀକୁ ଆସିଯାଅ, କଣ ଅନ୍ୟମାନଙ୍କ କଲ୍ୟାଣର ଠିକା ତୁମକୁ ଦିଆଯାଇଅଛି ?

ଗୋଟିଏ କାହାଣୀ ମନେ ପଡୁଛି । ଜଣେ ସନ୍ଥ ଥିଲେ । ସେ ଭିକ୍ଷା ପାଇଁ ଯିବା ସମୟରେ କୌଣସି ସ୍ଥାନରେ ଅନେକ ବେଶ୍ୟାଙ୍କୁ ଏକତ୍ରିତ ହୋଇଥିବାର ଦେଖିଲେ । ବାବାଜୀ ପଚାରିଲେ ଏଠାରେ କଣ ହେଉଛି ? କେହି ଜଣେ ଉତ୍ତର ଦେଲେ ମହାରାଜ ! ଜଣେ ବେଶ୍ୟା ଅନ୍ୟ ସମସ୍ତ ବେଶ୍ୟାମାନଙ୍କୁ ନିମନ୍ତ୍ରଣ କରି ଭୋଜି ଦେଉଛି । ସେଥିପାଇଁ ହାଲୁଆ, ତରକାରୀ, ଭାତ ଇତ୍ୟାଦି ପ୍ରସ୍ତୁତ କରିଛି । ବେଶ୍ୟା ରୋଷେଇ କରିଥିବା ଭାତର ପେଜ ନାଳରେ

ବହୁଥିଲା । ବାବାଜୀ ସେଠାରେ ବସି ପେଜରେ ହାତ ଧୋଇବା ଆରମ୍ଭ କଲେ । ବେଶ୍ୟା ଛାତ ଉପରେ ବସିଥିଲା, ବାବାଜୀ ହାତ ଧୋଇବାର ଦେଖି କହିଲା ''ବାବାଜୀ ଏପରି କଣ କରୁଛନ୍ତି ?'' ବାବାଜୀ କହିଲେ ''ଆଉ କରିବି କଣ, ହାତ ଧୋଉଛି ।'' ବେଶ୍ୟା କହିଲା- ''ମହାରାଜ ! ପେଜରେ ହାତ ଧୋଇଲେ ପେଜ ଲାଗିଯିବ ଓ ଅଧିକ ମଇଳା ହେବ, ପାଣିରେ ଧୁଅନ୍ତୁ ।'' ବାବାଜୀ କହିଲେ — ''ଏହା ପାଣି ନୁହେଁ ତ ଆଉ କଣ, ତୋତେ ଦେଖାଯାଉନାହିଁ, ତୁ ଅନ୍ଧୁଣୀ କି ?'' ବେଶ୍ୟା କହିଲା— ''ବାବାଜୀ ଏହା ଶୁଦ୍ଧ ପାଣି ନୁହେଁ; ଶୁଦ୍ଧ ପାଣିରେ ହାତ ଧୁଆଯାଏ । ସେତେବେଳକୁ ବେଶ୍ୟା ପାଖକୁ ଆସିଯାଇଥିଲା । ବାବାଜୀ କହିଲେ— ''ତୁ ଯେଉଁ ବେଶ୍ୟା ମାନଙ୍କୁ ଭୋଜି ଦେଉଅଛୁ ସେମାନେ କଣ ଅଧିକ ଶୁଦ୍ଧ ? ବେଶ୍ୟା-ଭୋଜନ ଦେଲେ କଣ କଲ୍ୟାଣ ହୋଇଯିବ ? ବେଶ୍ୟା କହିଲା— ''ମହାରାଜ ! ମୁଁ ଶୁଣିଲି ଯେ ଦାନ-ପୁଣ୍ୟ କରାଇବା ଦ୍ୱାରା ଭୋଜନ କରାଇବା ଦ୍ୱାରା ବହୁତ ପୁଣ୍ୟ ହୁଏ, ତେଣୁ ମୁଁ ସାଧୁମାନଙ୍କ ପାଖକୁ ଯାଇ ପଚାରିଲି, ''ମହାରାଜ ! କଲ୍ୟାଣ କିପରି ହେବ ? ସେମାନେ କହିଲେ— ''ସାଧୁ-ସନ୍ଥଙ୍କର ସେବା କର, କଲ୍ୟାଣ ହେବ ।'' ପୁଣି ମୁଁ ବ୍ରାହ୍ମଣମାନଙ୍କ ପାଖକୁ ଯାଇ ପଚାରିଲି- ''କଲ୍ୟାଣ କିପରି ହେବ'' ? ସେମାନେ କହିଲେ—

"ଆମ୍ଭେମାନେ ଜନ୍ମଜାତ ବ୍ରାହ୍ମଣ, ଆମର ସେବା କଲେ କଲ୍ୟାଣ ହେବ।" ପୁଣି ମୁଁ ବୈଷ୍ଣବଙ୍କ ପାଖକୁ ଗଲି ସେମାନେ କହିଲେ— "ଆମର ସେବାକର।" ଶୈବଙ୍କ ପାଖକୁ ଗଲି, ସେ କହିଲେ— "ଶୈବଙ୍କ ସେବା ଦ୍ୱାରା କଲ୍ୟାଣ ହେବ।" ଏହିଭଳି ମୁଁ ଯେଉଁଠିକି ଗଲି ସମସ୍ତେ ନିଜର ମହିମା କହିଲେ, ଏହା ଶୁଣି ମୋତେ ଠିକ୍ ଜ୍ଞାନ ଓ ଉପାୟ ମିଳିଗଲା ଯେ ବେଶ୍ୟା ମାନଙ୍କୁ ଭୋଜନ ଦେଲେ କଲ୍ୟାଣ ହେବ। ଏହିପରି କହିବାବାଲା ଏବଂ ଶିକ୍ଷା ନେଲାବାଲା ଉଭୟ ନିଜ-ନିଜ ମତର ପ୍ରଚାର ଆରମ୍ଭ କରି ଦେଲେ ଯେ ଗୁରୁ କର ତା'ହେଲେ କଲ୍ୟାଣ ହେବ। ବିଚାର କରନ୍ତୁ ଯେଉଁମାନେ ଗୁରୁ କରିଛନ୍ତି, ସେମାନଙ୍କର କଣ ପରିବର୍ତ୍ତନ ହୋଇଛି ? ଯେପରି ପ୍ରଥମରୁ ଥିଲେ ଏବେ ମଧ୍ୟ ସେହିପରି ଅଛନ୍ତି। ଅପ୍ରାକୃତ ଗୁରୁରେ କାମ ହେବ ନାହିଁ। ଆପଣଙ୍କ ଦ୍ୱାରା ନିର୍ମିତ ଗୁରୁ କିପରି ଆପଣଙ୍କର କଲ୍ୟାଣ କରିବେ ?

ବାସ୍ତବରେ ଗୁରୁ ତିଆରି ହୁଏ ନାହିଁ। ଗୁରୁ ଆପେ ଆପେ ହୁଅନ୍ତି। ଯାହାଙ୍କ ଦ୍ୱାରା ଆମକୁ କୌଣସି ବିଷୟରେ ଜ୍ଞାନ ମିଳେ, ସେହିବିଷୟରେ ସେ ଗୁରୁ ହୁଅନ୍ତି, ଆମେ ତାଙ୍କୁ ଗୁରୁ ମାନୁ ବା ନ ମାନୁ ଜାଣୁ ବା ନ ଜାଣୁ। ଜଣେ ସନ୍ଥଙ୍କୁ କେହି ପଚାରିଲେ "ଆପଣଙ୍କ ଗୁରୁ କିଏ ?" ସେ ଉତ୍ତର ଦେଲେ- " ଯେ ମୋ

ଠାରୁ ଅଧିକ ଜାଣିଛନ୍ତି'' ଏବଂ ''ଚେଲା କିଏ ?'' ''ଯେ ମୋ ଠାରୁ କମ୍ ଜାଣିଛି ।'' କେତେ ବଢ଼ିଆ କଥା କହିଲେ । ଯେ ମୋ ଠାରୁ ବେଶୀ ଜାଣିଛି ସେ ମୋର ଗୁରୁ, ମୁଁ ମାନେ ବା ନ ମାନେ । ଯେ ମୋ ଠାରୁ କମ୍ ଜାଣିଛି ସେ ମୋର ଚେଲା, ସେ ଚେଲା ହେଉ ବା ନ ହେଉ । ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରୁଅଛି— ପ୍ରଥମେ ପୁତ୍ର ଜନ୍ମ ହୁଏ କି ବାପା ?

ଶ୍ରୋତା— ବାପା !

ସ୍ୱାମୀଜୀ— ନା-ନା ପ୍ରଥମେ ପୁତ୍ର ଜନ୍ମହୁଏ, ପରେ ସେ ବାପା ହୋଇଅଛି ପୁତ୍ର ଜନ୍ମ ନ ହେବା ପର୍ଯ୍ୟନ୍ତ ତାଙ୍କୁ 'ବାପା' ନାମ ହୁଏ ନାହିଁ । ଯାହାଙ୍କ ଦ୍ୱାରା ପୁତ୍ର ଉତ୍ପନ୍ନ ହୁଏ, ତାଙ୍କୁ 'ବାପା' ଡକାଯାଏ ଏବଂ ଯାହାଙ୍କ ଦ୍ୱାରା ଜ୍ଞାନପ୍ରାପ୍ତ ହୁଏ, ସେ ହିଁ 'ଗୁରୁ' ହୋଇଯାଆନ୍ତି । ଆପଣ ତାଙ୍କୁ ଗୁରୁ ମାନନ୍ତୁ ବା ନ ମାନନ୍ତୁ । ଯାହାଦ୍ୱାରା ଆପଣଙ୍କୁ ବାସ୍ତବିକ୍ ସିଦ୍ଧାନ୍ତ ମିଳିଗଲା ଏବଂ ଯାହାଙ୍କର ଶିକ୍ଷାରେ ଆପଣଙ୍କର ଉନ୍ନତି ହେଲା ସେ ଆପଣଙ୍କର ଗୁରୁ ହୋଇଗଲେ, ଚାହେଁ ସେ ଜାଣନ୍ତୁ ବା ନ ଜାଣନ୍ତୁ । ସେ ତିଆରି ଗୁରୁ ନୁହନ୍ତି, ଅସଲି ଗୁରୁ । ତିଆରି ଗୁରୁ ଦ୍ୱାରା କଦାପି କଲ୍ୟାଣ ହୁଏ ନାହିଁ । କାଳନେମି ହନୁମାନଙ୍କୁ କହିଲା ''ମୁଁ ଗୁରୁ, ସ୍ନାନକରି ଆସ, ମୁଁ ତୁମକୁ ଦୀକ୍ଷା ଦେବି ।'' ହନୁମାନ ସ୍ନାନ କରିବା ପାଇଁ

ଗଲେ । ଅଭିଶପ୍ତ କୁମ୍ଭୀରୀ କହିଲା "ମହରାଜ ! ଏହାକୁ ସନ୍ଥ ବୋଲି ଭାବନ୍ତୁ ନାହିଁ, ଏ ତ ରାକ୍ଷସ ଅଟେ ।" ହନୁମାନ ପୁନଃ ଫେରିଆସି କହିଲେ— "ପ୍ରଥମେ ଗୁରୁ-ଦକ୍ଷିଣା ନିଅ, ପରେ ମନ୍ତ୍ରଦେବ ।" ଏହିପରି କହି ସେ କାଳନେମିକୁ ଲାଙ୍ଗୁଡ଼ରେ ଗୁଡ଼ାଇ ଏପରି କଚାଡ଼ିଦେଲେ ଯେ ସେ ଇହଧାମତ୍ୟାଗ କରି 'ଗୋବିନ୍ଦାୟ ନମଃ' ହୋଇଗଲେ ! କୁଟିଳ ଓ ଭଣ୍ଡ ଗୁରୁଙ୍କର ପୂଜା ଏହିପରି ହିଁ ହୋଇଥାଏ । 'ଯେପରି ଦିଅଁକୁ, ସେପରି ପୂଜା' । ଟିକିଏ ବିଚାର କରନ୍ତୁ, ଯାହାଙ୍କ ମନରେ ଚେ଼ଲା ତିଆରି ପାଇଁ ଇଚ୍ଛା ଅଛି, ସେ ଗୁରୁ କିପରି ହେଲା ! ସେ ତ ଚେ଼ଲା-ଦାସ । ଯାହାର ଚେ଼ଲା ଆବଶ୍ୟକ ସେ ତ ଚେ଼ଲାର ଚାକର । ଯାହାର ଟଙ୍କା ଆବଶ୍ୟକ ସେ ଟଙ୍କାର ଚାକର । ଯଦି ଟଙ୍କା ଦେଲେ କେହି ଗୁରୁ ହେଉଛି, ତାହାହେଲେ ସେ ଟଙ୍କାର ଦାସ ହେଲା ଏବଂ ସେହିଟଙ୍କା ଚେ଼ଲା ପାଖରେ ରହିଛି, ତେଣୁ ଚେ଼ଲା ତ ଗୁରୁଙ୍କର-ଗୁରୁ ! ଏବେ ଆପଣ ବିଚାର କରନ୍ତୁ ଏହିପରି ଗୁରୁ ଚେ଼ଲାର କଣ କଲ୍ୟାଣ କରିବ ? କିନ୍ତୁ ଜନସମାଜ ଏହା ବିଚାର କରୁନାହାନ୍ତି ଏବଂ ବିଚାର ହୀନ ହୋଇ କହୁଛନ୍ତି ଆରେ ! ଏହାଙ୍କୁ ଟଙ୍କା ଭେଟୀ ଦିଅ ଏବଂ ଏହାରଙ୍କର ଚେ଼ଲା ବନିଯାଅ, ଏହି 'ଗୁରୁ' ଆମର କଲ୍ୟାଣ କରିଦେବେ । ଏହିପରି ଗୁରୁ ମଧ ଆମ ମା-ଭଉଣୀ ମାନଙ୍କୁ

କହୁଛନ୍ତିକି "ତୁମେ ଏପରି-ଏପରିକର, ନ ହେଲେ ତୁମକୁ ଚ଼ଢ଼େଇ କରି ଉଡ଼ାଇ ଦେବି !" ଜୟ ହୋ ମହାରାଜ ! ଚ଼ଢ଼େଇ କରି ଉଡ଼ାଇ ଦେଲେ ଆମେ ମାନିବୁ, ନ ହେଲେ କିଛି ଦେବୁ ନାହିଁ । ବହୁତ ବଢ଼ିଆ ! ଆମର ହାନି କ'ଣ, ଲାଭ-ହିଁ ଲାଭ, ଆଉ ଚାଲିବାକୁ ପଡ଼ିବ ନାହିଁ, ଆକାଶରେ ଉଡ଼ି ଚାଲିଯିବୁ ! ସେମାନେ ଏହିପରି ମଧ୍ୟ ଆଶୀର୍ବାଦ ଦିଅନ୍ତି କି 'ତେରେ ଦୂଧ-ପୂତକୀ ଖୈର-ଅର୍ଥାତ୍ ତୋର ଦୁଧ ନଷ୍ଟ ନ ହେଉ ଓ ତୋର ପୁଅ ମଧ୍ୟ ସୁସ୍ଥ-ସବଳ ହେଉ । ଗୁରୁଙ୍କୁ କହିବା ଉଚିତ୍, ମହାରାଜ ! ଆଶୀର୍ବାଦ ଆପଣ ନିଜ ପାଖରେ ରଖନ୍ତୁ । ସେ କହନ୍ତି, "ଏତେ ଟଙ୍କା ଭେଟୀ ଚ଼ଢ଼ାଅ, ଏତେ ଟଙ୍କା ଦକ୍ଷିଣା ଦେଲେ ମୁଁ ତୁମର କଲ୍ୟାଣ କରିଦେବି, ଏହିପରି ବିଦ୍ୟା ବତାଇଦେବି ଯାହାଦ୍ୱାରା ଲୁହା ସୁନାରେ ପରିଣତ ହୋଇଯିବ ।" ବାବାଜୀ ! ତୁମ ପାଖରେ ଯଦି ଏପରି ବିଦ୍ୟା ରହିଛି ତା'ହେଲେ ଆମକୁ କାହିଁକି ଟଙ୍କା ମାଗୁଛ ? ଟଙ୍କାର ଇଚ୍ଛା କାହିଁକି ରଖୁଛ ? ସେ କହନ୍ତି, ମୋ ପାଖରେ ଟଙ୍କା କମ୍ ଅଛି, ଏଥିପାଇଁ ମାଗୁଛି । ମହାରାଜ ! ଆମ ପାଖରେ ତ ଟଙ୍କା ଅଧିକ ଅଛି ତା'ହେଲେ ଆମେ ତୁମଠାରୁ ବଡ଼ ହେଲୁ, ପୁଣି ତୁମର ଚାକର କାହିଁକି ହେବୁ ? ଟଙ୍କା ଦ୍ୱାରା କିଣାଯାଉଥିବା ବ୍ୟକ୍ତି ଗୁରୁ ନୁହନ୍ତି, ସେ ତ ଚେ଼ଲାର ଚାକର ।

ବାସ୍ତବରେ ଗୁରୁଙ୍କର ଚେ଼ଲା ଆବଶ୍ୟକ ହୁଏ ନାହିଁ; ଚେ଼ଲାର ଗୁରୁ ଆବଶ୍ୟକ ହୁଏ । ଆମ ଭାଇ-ଭଉଣୀଙ୍କର ଏହିପରି ଅନ୍ଧଧାରଣା ରହିଅଛି ଯେ ଗୁରୁ କରିବା ଦ୍ୱାରା କଲ୍ୟାଣ ହୋଇଯିବ । କପଟୀ ଗୁରୁ କଲ୍ୟାଣ କରେ ନାହିଁ । କୌଣସି ବ୍ୟକ୍ତି ମୋତେ ପଚାରିଲେ ମୁଁ ଉତ୍ତର ଦେବି ଯେ ଭଗବାନ ଶ୍ରୀକୃଷ୍ଣଙ୍କୁ ଗୁରୁ ମାନିନିଅ— **'କୃଷ୍ଣଂ ବନ୍ଦେ ଜଗଦ୍ ଗୁରୁମ୍ ।'** ଭଗବାନ ଶ୍ରୀକୃଷ୍ଣ ଜଗତର ଗୁରୁ ଅଟନ୍ତି ଏବଂ ଆପଣ ମଧ୍ୟ ଜଗତର ଅନ୍ତର୍ଗତ ଅଟନ୍ତି । ତାଙ୍କର ମନ୍ତ୍ର ହେଉଛି— 'ଶ୍ରୀମଦ୍ଭଗବତ୍ ଗୀତା' । ଭଗବଦ୍‌ଗୀତାକୁ ଗଭୀର ଭାବରେ ମନନ ଓ ଚି଼ନ୍ତନ କରନ୍ତୁ ନିଶ୍ଚିତ କଲ୍ୟାଣ ହେବ । ଯଦି ସନ୍ଦେହ ହେଉଛି ତାହାହେଲେ ଜୀବନରେ ପାଳନ କରି ଦେଖନ୍ତୁ କଲ୍ୟାଣ ହେଉଛି କି ନାହିଁ । ଭଗବାନଙ୍କ ଛତ୍ର-ଛାୟା ତଳେ ରହି ଆପଣ ଗୁରୁଙ୍କ ପାଇଁ କାହିଁକି ବୁଲୁଛନ୍ତି ?

ଗାଁ ଗହଳିର ମା'ମାନେ ଡ଼ରୁଛନ୍ତି କି ଆମେ କାହାର ଉପଦେଶ ମାନିବୁ ! ଯଦି ହନୁମାନଙ୍କୁ ପୂଜା କରିବୁ ତାହାହେଲେ କୃଷ୍ଣ ଭଗବାନ ରାଗିବେ, କୃଷ୍ଣଙ୍କୁ ପୂଜା କଲେ ରାମଚ଼ନ୍ଦ୍ର ରାଗିବେ, ରାମଙ୍କୁ ପୂଜାକଲେ ଦେବୀ କୋପ କରିବେ ! ଦେବୀଙ୍କୁ ପୂଜା କଲେ ହନୁମାନ ରାଗିବେ ! ଏମିତି ପରିସ୍ଥିତିରେ ଆମେ କ'ଣ କରିବୁ ? ଏହିପରି ପ୍ରଶ୍ନ ମୋ ପାଖକୁ ଆସୁଅଛି । କେଡ଼େ ସରଳ ମା'

ମାନଙ୍କର ହୃଦୟ ! ଯେ କୌଣସି ଠକ ମିଳିଗଲେ କୋମଳ ହୃଦୟା ମା'ମାନଙ୍କୁ ପତନକୁ ନେଇଯିବ ! ମୁଁ କହୁଛି ତୁମେ ହୃଦୟରୁ ଏହି ଡ଼ରକୁ ବାହାର କରିଦିଅ । ଯଦି ପତିବ୍ରତା ସ୍ତ୍ରୀ ଏପରି କହେ କି ପତିଦେବଙ୍କ ସେବା କଲେ ଅନ୍ୟ ପୁରୁଷ ନାରାଜ ହୋଇଯିବେ, ତାହାହେଲେ ବଡ଼ ହଇରାଣର କଥା । ସମସ୍ତଙ୍କର ସେବା କିପରି ହୋଇପାରିବ । ତୁମେ କୌଣସି ଏକ ଦେବୀ ବା ଦେବତାଙ୍କର ଭକ୍ତ ହୋଇଯାଅ ସମସ୍ତେ ରାଜି ହୋଇଯିବେ । ଯଦି ତୁମେ କୃଷ୍ଣ ଭଗବାନଙ୍କ ଭକ୍ତ ହୋଇଯିବ ତାହାହେଲେ ଦେବୀ, ସୂର୍ଯ୍ୟ, ଗଣେଶ, ଶିବ ଇତ୍ୟାଦି ସମସ୍ତେ ରାଜି ହୋଇଯିବେ । ପତିବ୍ରତା ଉପରେ କଣ କେହି ନାରାଜ ହୁଏ ? ତୁମେ ପତିଙ୍କ ସେବା କରୁଅଛ, ଆମର ତ ସେବା କରୁନାହିଁ, ଆମେ ନାରାଜ ହେବୁ କାହିଁକି ? ପତିବ୍ରତା ଉପରେ କେହି ନାରାଜ ହୁଅନ୍ତି ନାହିଁ । ଯଦି ନାରାଜ ହୁଅନ୍ତି, ସେ କ'ଣ କରି ପକାଇବେ ? ଥରେ ଜଣେ ଭାଇ କହିଲେ ମହାରାଜ ! ଆପଣ ମୋ ଉପରେ ନାରାଜ ହୋଇଗଲେ କି ? ମୁଁ କହିଲି ଯଦି ନାରାଜ ହେବା ଦ୍ୱାରା ଭଗବାନ ମିଳୁଥାଆନ୍ତେ, ତେବେ ତୁମ ଉପରେ ନାରାଜ ହୁଅନ୍ତି ! ଭଗବାନ ତ ମିଳୁନାହାନ୍ତି, ମୁଁ ନାରାଜ ହେବି କାହିଁକି ! ଏହାଫଳରେ ମୋତେ କଣ ବା ଲାଭ ମିଳିବ ? ବିଚରା ଭାଇମାନେ ଡ଼ରୁଅଛନ୍ତି ଯେ ଗୋଟିଏ ଦେବତାଙ୍କୁ ପୂଜା କରିବା ଦ୍ୱାରା

ଅନ୍ୟଦେବତା କୋପ କରିବେ । କଦାପି ନୁହେଁ । ଯଦି ଆପଣ ଅନନ୍ୟ ଭାବରେ ଏକ ଦେବତାଙ୍କ ଉପାସନାରେ ତତ୍ପରତା ପୂର୍ବକ ଲାଗିଯିବେ ତାହାହେଲେ ଅନ୍ୟ ସବୁ ଦେବତା ପ୍ରସନ୍ନ ହୋଇଯିବେ ।

**ଶ୍ରୋତା—** ଆଜି-କାଲି ଦୁନିଆରେ ଖୋଜିଲେ ମଧ ଗୁରୁ ମିଳୁନାହାନ୍ତି । ଯଦି ମିଳୁଛନ୍ତି ତା'ହେଲେ କପଟାଚାରୀ ଏବଂ ଠକ ହିଁ ମିଳୁଛନ୍ତି । ମୁଁ ଗୁରୁ ଖୋଜିବା ପାଇଁ ଅନେକ ତୀର୍ଥକୁ ଯାଇଛି କିନ୍ତୁ ବାସ୍ତବିକ୍ ଗୁରୁ ମିଳିଲେ ନାହିଁ । ଆପଣ କହୁଛନ୍ତି ଯେ ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କୁ ନିଜର ଗୁରୁ ମାନନ୍ତୁ । ଯଦି ଆପଣ ଏହିକଥା ମୁକ୍ତକଣ୍ଠରେ ଘୋଷଣା କରିଦେବେ କି ଭାଇ ! ଆପଣ ଭଗବାନ ଶ୍ରୀକୃଷ୍ଣଙ୍କୁ ହିଁ ଗୁରୁ ମାନନ୍ତୁ, ତାହାହେଲେ ଆମ ହୃଦୟରେ ରହିଥିବା ଭ୍ରମଧାରଣା ନଷ୍ଟ ହୋଇଯିବ .... ।

**ସ୍ୱାମୀଜୀ—** ବାସ୍ତବରେ ଗୁରୁଙ୍କୁ ଖୋଜିବା ପାଇଁ ପଡ଼େ ନାହିଁ । ଯେପରି ଫଳ ପାଚିଗଲେ ଶୁଆ ନିଜେ ଫଳକୁ ଖୋଜିନିଏ, ସେହିପରି ପ୍ରକୃତ ଗୁରୁ ସ୍ୱୟଂ ଶିଷ୍ୟକୁ ଖୋଜି ନିଅନ୍ତି, ଶିଷ୍ୟକୁ ଖୋଜିବାକୁ ପଡ଼େ ନାହିଁ । ନିଜର କଲ୍ୟାଣ ପାଇଁ ଆପଣ ପ୍ରସ୍ତୁତ ହୋଇଯିବା ମାତ୍ରେ, ଗୁରୁ ଆସି ପହଞ୍ଚି ଯାଆନ୍ତି ! ଫଳପାଚି ପ୍ରସ୍ତୁତ ହୋଇଗଲେ ଶୁଆ ନିଜେ ତା'ପାଖକୁ ଆସେ, ଫଳ ଶୁଆକୁ ଡାକେ ନାହିଁ । ଏହିପରି ଆପଣ ନିଜେ ନିଜର କଲ୍ୟାଣ ପାଇଁ ପ୍ରସ୍ତୁତ ହୋଇ

ଯାଆନ୍ତୁ, ଗୁରୁ ସ୍ୱତଃ ଆସିଯିବେ । ବାଳକର ପାଳନ-ପୋଷଣ 'ମା' ହିଁ କରିବାକୁ କ୍ଷମ । କିନ୍ତୁ ବାଳକର ଚିନ୍ତା ମାକୁ ହିଁ ଅଧିକ ହୋଇଥାଏ, ବାଳକ ମା'ର ଚିନ୍ତା କରେ ନାହିଁ । ଏତେ ଡେରି ହୋଇଗଲାଣି, ପିଲା ଖିର ପିଇ ନାହିଁ ତା'ର କଣ ବା ହୋଇଛି, ଏହିପରି ଚିନ୍ତା ସର୍ବଦା ମା' ହୃଦୟରେ ରହେ । ଏହିପରି ଯେତେବେଳେ ମନୁଷ୍ୟ ଅସଲି ଶିଷ୍ୟ ହେବା ପାଇଁ ଯୋଗ୍ୟ ହୋଇଯାଏ, ତାର ହୃଦୟରେ ନିଜ କଲ୍ୟାଣର ଜିଜ୍ଞାସା ଜାଗେ, ସେତେବେଳେ ଗୁରୁ 'ସ୍ୱୟଂ' ନିଜେ ତା' ପାଖରେ ପହଞ୍ଚିଯାଆନ୍ତି । ଅସଲି ଗୁରୁ ଅନ୍ୟମାନଙ୍କୁ ନିଜର ଚେଲା କରନ୍ତି ନାହିଁ, ବରଂ ଗୁରୁ ହିଁ କରିଦିଅନ୍ତି । ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଥିବା ବ୍ୟକ୍ତି ସଂସାରର ଗୁରୁ ହୋଇଯାଆନ୍ତି । ଏବଂ ସେଠାରେ ଗୁରୁଙ୍କର ଭଣ୍ଡାର ଖୋଲିଯାଏ, ଯେଉଁଠାରେ କି ଗୁରୁ-ହିଁ-ଗୁରୁ ହୁଅନ୍ତି । ଅନ୍ୟମାନଙ୍କୁ ନିଜର ଚେଲାରେ ପରିଣତ କରିବା ତ ପଶୁତା । କୁକୁର ଅନ୍ୟ କୁକୁରକୁ ମାରିବା ପାଇଁ ଧାଏଁ କିନ୍ତୁ ସେହି କୁକୁର ତଳେ ପଡ଼ିଗଲେ ମାରୁଥିବା କୁକୁରଟି ଉପରକୁ

* ପାରସମେଁ ଅରୁ ସଂତମେଁ ବହୁତ ଅଂତରୌ ଜାନ ।
ବହ ଲୋହା କଂଚନ କରୈ ବହକରୈ ଆପୁସମାନ ॥
ଅର୍ଥାତ୍ -: ପାରସ ଓ ସଂତଙ୍କ ମଧ୍ୟରେ ବହୁତ ପ୍ରଭେଦ ପାରସତ ଲୁହାକୁ ସୁନାକରେ କିନ୍ତୁ ସନ୍ତ ନିଜ ସମାନ କରି ଦିଅନ୍ତି

ଉଠିଯାଏ ଓ ଖୁସି ହୋଇଯାଏ । ଅନ୍ୟମାନଙ୍କୁ ନିଜର ଚେଲା ବନାଇ, ତାଙ୍କ ଉପରେ ଶାସନ କରିବା ଓ ପ୍ରସନ୍ନ ହେବା କଣ ଗୁରୁଙ୍କ ଲକ୍ଷଣ ? ଭଗବାନଙ୍କ ଦରବାରରେ ଅନ୍ଧାର ନାହିଁ । ଯଦି ଆପଣ ପ୍ରସ୍ତୁତ ହୋଇଯିବେ ତାହାହେଲେ ଭଲଭଲ ଗୁରୁ ଆପଣଙ୍କୁ ଖୋଜିବେ । ପିଲାବିନା ମା' ବର୍ଷ-ବର୍ଷ ପର୍ଯ୍ୟନ୍ତ ରହିପାରିବ, କିନ୍ତୁ ପିଲା ମା' ବିନା ରହିପାରିବ ନାହିଁ । ପୁଣି ଶିଶୁ ଯେତେ ପରିମାଣରେ ମା'ର ଆବଶ୍ୟକତା ଅନୁଭବ କରେ, ମା' ତା'ଠାରୁ ଅଧିକ ଶିଶୁ ପାଇଁ ଉପଲବ୍ଧି କରେ । କିନ୍ତୁ ଶିଶୁ ମା'ର ହୃଦୟକୁ ବୁଝିପାରେ ନାହିଁ । ସେହିପରି ଗୁରୁ ଶିଷ୍ୟ ବିନା ରହିପାରିବେ କିନ୍ତୁ ଶିଷ୍ୟ ଗୁରୁଙ୍କ ବିନା ରହିପାରିବ ନାହିଁ । ଶିଷ୍ୟ ହୃଦୟରେ ନିଜ ଉଦ୍ଧାରର ଅଭିଳାଷ ଅପେକ୍ଷା ଗୁରୁଙ୍କ ହୃଦୟରେ ଶିଷ୍ୟର ଉଦ୍ଧାରର ଅଭିଳାଷ ଅଧିକ ହୁଏ ମାତ୍ର ଚେଲା ଗୁରୁଙ୍କ କୋମଳ ହୃଦୟକୁ ବୁଝିପାରେ ନାହିଁ ।

ବାଛୁରୀକୁ ଦେଖି ଗାଈର ହୃଦୟ ଦ୍ରବିତ ହୋଇଯାଏ । ବାଛୁରୀ ତ ଗୋଟିଏ ମୁଖରେ ଖିର ପିଏ କିନ୍ତୁ ଗାଈର ଦୁଗ୍ଧ ଚାରୋଟି ଚିର ଦେଇ ବାହାରେ । ସେହିପରି ଆପଣଙ୍କ ହୃଦୟରେ ନିଜ କଲ୍ୟାଣର ଜିଜ୍ଞାସା ଦେଖିଲେ ଗୁରୁ ମହାରାଜାଙ୍କ ହୃଦୟ ଆନନ୍ଦରେ ପ୍ରଫୁଲ୍ଲିତ ହୋଇଥାଏ । ଜୀବର ଉଦ୍ଧାର ପାଇଁ ସଚ୍ଛ-

ମହାତ୍ମାଙ୍କ ମନରେ ଯେତେ ପରିମାଣରେ ଅନୁରକ୍ତି ରହେ, ନିଜର ଉଦ୍ଧାର ପାଇଁ ସ୍ୱୟଂଜୀବର ମଧ୍ୟ ସେତେ ଅନୁରକ୍ତି ନ ଥାଏ ।

ଆପଣ ଗୁରୁ ଖୋଜିବାର ଆବଶ୍ୟକ କ'ଣ ? ଆପଣ ବାସ୍ତବିକ୍ ଶିଷ୍ୟ ହୋଇଯାଆନ୍ତୁ, ଯଦି ଆପଣଙ୍କ ହୃଦୟରେ ନିଜ ଉଦ୍ଧାର ଲାଳସା ଆସିଯିବ, ତା'ହେଲେ ଗୁରୁ ଖୋଜି-ଖୋଜି ଆପଣଙ୍କ ପାଖକୁ ଆସିଯିବେ । ସ୍ୱପ୍ନରେ ମଧ୍ୟ ଗୁରୁ ଦେଖାଦେଇ ମନ୍ତ୍ର ପ୍ରଦାନ କରିଦେବେ । ଚ଼ରଣ ଦାସ ମହାରାଜାଙ୍କୁ ଶୁକଦେବ ସ୍ୱପ୍ନରେ ଦୀକ୍ଷାପ୍ରଦାନ କରିଥିଲେ । ଶୁକଦେବ ମହାରାଜ ହଜାରେ ବର୍ଷତଳର ଏବଂ ଚ଼ରଣ ଦାସ ସନ୍ଥ ଏବେକାର, କିନ୍ତୁ ଶୁକଦେବ ଗୁରୁ ହୋଇଗଲେ ଓ ଚ଼ରଣ ଦାସ ଶିଷ୍ୟ ହୋଇଗଲେ । ଗୁରୁଜନଙ୍କ ହୃଦୟରେ ତ ଦୁନିଆକୁ ଉଦ୍ଧାର କରିବାର ଲାଳସା ସଦା-ସର୍ବଦା ଲାଗି ରହିଛି । ଏଣୁ ଆପଣ ତାଙ୍କୁ ଖୋଜିବାର କୌଣସି ଆବଶ୍ୟକତା ନାହିଁ ।

ଭାଇମାନେ କହୁଛନ୍ତି 'ଭଗବାନଙ୍କୁ ଗୁରୁ ମାନିବା ପାଇଁ ଆପଣ ଘୋଷଣା କରି ସମସ୍ତଙ୍କୁ କହିଦିଅନ୍ତୁ' । ତେଣୁ ମାତା, ଭାଇଙ୍କୁ ମୋର ନିବେଦନ କି ଯଦି ଆପଣ ଗୁରୁ କରିବା ପାଇଁ ଇଚ୍ଛୁକ ତାହାହେଲେ କୃଷ୍ଣ ଭଗବାନଙ୍କୁ ଗୁରୁ ସ୍ୱୀକାର କରିନିଅନ୍ତୁ । ସେ ସମ୍ପୂର୍ଣ୍ଣ ଜଗତର ଗୁରୁ— **'କୃଷ୍ଣଂବନ୍ଦେ ଜଗଦ୍‌ଗୁରୁମ ।'**

ଆପଣ ଜଗତରୁ ବାହାର ନୁହଁନ୍ତି । 'ଗୀତା' ହେଉଛି କୃଷ୍ଣ ଭଗବାନଙ୍କ ମନ୍ତ୍ର । 'ଗୀତା' ର ପଠନ ପାଠନ, ମନନ ତଥା ମୁଖସ୍ଥ କରନ୍ତୁ ଓ ତଦନୁସାରେ ନିଜର ଜୀବନ ଗଠନ କରନ୍ତୁ । ଉଦ୍ଧାର ହୋଇଯିବ, ପରମାନନ୍ଦ ପ୍ରାପ୍ତ ହୋଇଯିବ ! କଲ୍ୟାଣର ଜିଜ୍ଞାସା ଯେତେ ତୀବ୍ର ହେବ, ସେତେ ଶୀଘ୍ର ଉଦ୍ଧାର ହୋଇଯିବ, ଏବଂ ଯେତେ କମ ହେବ ସେତେ ବିଳମ୍ବରେ ହେବ । ଏଥିରେ ଲାଭ ହିଁ ହେବ, କ୍ଷତି ହେବ ନାହିଁ । ଯଦି କୌଣସି ' ଏରେ ଗୈରେ ନଥୁ ଖୈର' (ବେକାର) କୁ ଗୁରୁ ବନାଇବେ ତାହାହେଲେ ସେ କଣ କୃତ-କୃତ୍ୟ କରିବ, ଉଦ୍ଧାର କରିବ ? ଏଣୁ ନିଃଶଙ୍କୋଚ୍ ହୋଇ ପ୍ରଭୁଙ୍କ ଚ଼ରଣ କମଳର ଆଶ୍ରୟ ଗ୍ରହଣ କରନ୍ତୁ । ଭୟ କରନ୍ତୁ ନାହିଁ ଚ଼ମକନ୍ତୁ ନାହିଁ । କପଟାଚାରୀ ଗୁରୁଙ୍କର କେତେକ ପ୍ରତିନିଧି (ଏଜେଣ୍ଟ) ଏପରି କୁହନ୍ତି ଯେ "ତୁମେ ଏହାଙ୍କର (ମୋ ଗୁରୁଙ୍କର) ଚ଼େଲା ହୋଇଯାଅ ।" ରାବଣ ଛଦ୍ମ ବେଶରେ ସୀତାଙ୍କ ପାଖକୁ ଯାଇ ଭିକ୍ଷା ପ୍ରାର୍ଥନା କରି କହିଲା— "ଏ ଯେଉଁ ରେଖା ଅଙ୍କିତ ହୋଇଛି, ତା ଭିତରକୁ ମୁଁ ପ୍ରବେଶ କରିବି ନାହିଁ । ମୁଁ ନିରାକାର ମନ୍ତ୍ର ଜପ କରୁଛି — 'ନହୀଁ ଆତେ କାରକେ ଭୀତର, ନିରାକାର ଜପତେ ହରିହର ହର । ରେଖାଙ୍କିତ ଆକାର ଭିତରକୁ ମୁଁ ଯିବି ନାହିଁ, ତୁମେ ବାହାରକୁ ଆସି ଭିକ୍ଷା ପ୍ରଦାନ କର ।

ମାତା ସୀତା ବାହାରକୁ ଆସିବା ମାତ୍ରେ ସେ ପୁଷ୍ପକ ଯାନରେ ବସାଇ ଲଙ୍କାକୁ ନେଇଗଲା ! ଆଜିକାଲି ଗୁରୁଜୀ ମହାରାଜ ଏହିପରି ହିଁ ଅଟନ୍ତି ! ଏହାଙ୍କଠାରୁ ସାବଧାନ ରହିବା ଅତ୍ୟାବଶ୍ୟକ । ଆଜିଠାରୁ ମନେରଖନ୍ତୁ ଯେ **'କୃଷ୍ଣଂ ବନ୍ଦେ ଜଗଦ୍‌ଗୁରୁମ୍ !'**

ଗୁରୁ କିପରି ହେବା ଆବଶ୍ୟକ ?

ଯେଉଁ ସନ୍ଥ-ମହାପୁରୁଷଙ୍କଠାରେ ନିମ୍ନ ଲକ୍ଷଣ ରହିଥିବ:-

୧ । ଯେ ଆମ ଦୃଷ୍ଟିକୋଣରୁ ବାସ୍ତବିକ୍ ଜ୍ଞାନବାନ, ତତ୍ତ୍ୱଜ୍ଞ ହୋଇଥିବେ ଏବଂ ଯାହାଙ୍କ ବ୍ୟତୀତ ଅନ୍ୟ ମାନଙ୍କଠାରେ ଏପରି ଅଲୌକିକତା, ବିଲକ୍ଷଣତା ପ୍ରତିତ ହେଉ ନ ଥିବ ।

୨ । ଯେ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ ଆଦି ସାଧନାର ତତ୍ତ୍ୱକୁ ଠିକ୍-ଠିକ୍ ଜାଣିଥିବେ ।

୩ । ଯାହାଙ୍କ ସଙ୍ଗଦ୍ୱାରା, ବଚନ ଦ୍ୱାରା ଆମ ହୃଦୟରେ ରହିଥିବା ସନ୍ଦେହ ସବୁ ପଚାରିବା ବିନା ସ୍ୱତଃ ଦୂର ହୋଇଥାଏ ।

୪ । ଯାହାଙ୍କ ପାଖରେ ରହିବା ଦ୍ୱାରା ପ୍ରସନ୍ନତା ଓ ଶାନ୍ତି ଅନୁଭବ ହେଉଥିବ ।

୫ । ଯେ କେବଳ ଆମ ସହିତ ଆମର ହିତ ପାଇଁ ସମ୍ବନ୍ଧ ରଖିଥିବେ, ନିଜର ସ୍ୱାର୍ଥ ପାଇଁ ନୁହେଁ ।

୬ । ଯେ ଆମଠାରୁ କୌଣସି ବସ୍ତୁ ପାଇବା ପାଇଁ ଆଦୌ ଇଚ୍ଛା ରଖୁ ନ ଥିବେ ।

୭ । ଯାହାଙ୍କର ସମସ୍ତ ଚେଷ୍ଟା କେବଳ ସାଧକଙ୍କ ହିତ ପାଇଁ ହିଁ ହେଉଥିବ ।

୮ । ଯାହାଙ୍କ ପାଖରେ ରହିବା ଦ୍ୱାରା ଆମର ଜିଜ୍ଞାସା ଲକ୍ଷ୍ୟ ଦିଗକୁ ସ୍ୱତଃ ବଢୁଥିବ ।

୯ । ଯାହାଙ୍କ ସଂଗ, ଦର୍ଶନ, ଭାଷଣ, ସ୍ମରଣ ଆଦି ଦ୍ୱାରା ଆମର ଦୁର୍ଗଣ-ଦୁରାଚାର ଦୂର ହୋଇ ସ୍ୱତଃ ସଦ୍‌ଗୁଣ-ସଦାଚାର ରୂପ ଦୈବି ସମ୍ପତ୍ତି ହୃଦୟରେ ପ୍ରସ୍ଫୁଟିତ ହେଉଥିବ ।

*॥ ଶ୍ରୀ ହରିଃ ॥*

ଶ୍ରୀହରିଃ

# ଉଦ୍ଦେଶ୍ୟର ମହିମା

ପରମାତ୍ମାଙ୍କ ପ୍ରାପ୍ତି ବିଷୟରେ ଉଦ୍ଦେଶ୍ୟର ମହତ୍ତ୍ୱ ପନ୍ଦର ଅଣା, ଭାବର ମହତ୍ତ୍ୱ ତିନି ପଇସା ଏବଂ କ୍ରିୟାର ମହତ୍ତ୍ୱ ଏକ ପଇସା । କିନ୍ତୁ ଆଜି–କାଲି ସାଧକଙ୍କ ଦୃଷ୍ଟି ପ୍ରାୟତଃ କ୍ରିୟାଉପରେ ଅଧିକ ରହୁଅଛି, ଭାବଉପରେ ନୁହେଁ ପୁଣି ଉଦ୍ଦେଶ୍ୟ ଉପରେ ରହିବା ତ ଦୂରର କଥା । ସୁତରାଂ ଉଦ୍ଦେଶ୍ୟର ମହିମା ସମ୍ବନ୍ଧରେ କିଞ୍ଚିତ୍ ବିଚାର କରାଯାଉଛି ।

ଆମଜୀବନର ବାସ୍ତବିକ ଲକ୍ଷ କଣ? ଆମକୁ କାହାକୁ ପ୍ରାପ୍ତ କରିବାକୁ ହେବ? କେଉଁ ତତ୍ତ୍ୱକୁ ଜାଣିବାକୁ ହେବ? କାହାଙ୍କୁ ସାକ୍ଷାତକାର କରିବାକୁ ହେବ? ହୃଦୟରେ ଏହିପରି ସଦବିଚାର ଉଦୟ ହେବାଦ୍ୱାର ମନୁଷ୍ୟର କେବଳ ଏହି ଉଦ୍ଦେଶ୍ୟ ହୋଇଯିବ କି, ମୋତେ କେବଳ ପରମାତ୍ମାଙ୍କୁ ପ୍ରାପ୍ତ କରିବାକୁ, ତାଙ୍କୁ ଜାଣିବାକୁ, ତାଙ୍କର ସାକ୍ଷାତକାର କରିବାକୁ ତଥା ପରମାତ୍ମାଙ୍କ ସହିତ ଅନାଦିକାଳରୁ ଥିବା ନିତ୍ୟ–ସମ୍ବନ୍ଧର ଅନୁଭବ କରିବାକୁ ହେବ। କାରଣ ସେହି ଆତ୍ମୀୟ ପରମାତ୍ମା ହିଁ ଆମର ସାଥି ଅଟନ୍ତି, ସେ ସଦା ଚିରନ୍ତନ ସତ୍ୟ ଅଟନ୍ତି, ସଂସାରରେ ଅନ୍ୟକେହି ଚିରନ୍ତନ ନୁହଁନ୍ତି । ସାଂସାରୀକ ବିଷୟ ମିଳୁ ବା ନମିଳୁ, ଖାଇବାପାଇଁ ଖାଦ୍ୟ ମିଳୁ ବା ନମିଳୁ, ବସ୍ତ୍ର ମିଳୁ ବା ନମିଳୁ, ନୀଦ ଆସୁ ବା ନଆସୁ, ଆରାମମିଳୁ ବା

ନମିଳୁ, ମୋର ମାନହେଉ ଅଥବା ଅପମାନ, ପ୍ରଶଂସାହେଉ ବା ନିନ୍ଦା, ମୋତେ ଏଥିରେ କୌଣସି ମତଲବ ନାହିଁ; ମୋତେ ତ କେବଳ ପରମାତ୍ମାତତ୍ତ୍ୱପ୍ରାପ୍ତ କରିବାକୁ ହେବ–

ନିନ୍ଦତୁ ନୀତିନିପୁଣା ଯଦି ବା ସ୍ତୁବନ୍ତୁ
ଲକ୍ଷ୍ମୀ ସମବିଶତୁ ଗଚ୍ଛତୁ ବାଯଥେଷ୍ଟମ୍ ।
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
ନ୍ୟାଯ୍ୟାତ୍ପଥଃ ପ୍ରବିଚଳନ୍ତି ପଦଂ ନଧୀରାଃ ।।

(ଭର୍ତୃହରିନୀତିଶତକ)

'ନୀତି–ନିପୁଣ(ନୀତିଜ୍ଞ)ପୁରୁଷ ନିନ୍ଦା କରନ୍ତୁ ବା ସ୍ତୁତି, ଲକ୍ଷୀ(ସମ୍ପତ୍ତି) ରହୁ ବା ନରହୁ ଏବଂ ମୃତ୍ୟୁ 'ତତ୍କାଳ ହୋଇଯାଉ ବା ଯୁଗ–ଯୁଗ ପରେ, ନିଜ ଉଦ୍ଦେଶ୍ୟରେ ଦୃଢ଼ ରହୁଥିବା ଧୀର ପୁରୁଷ ନ୍ୟାୟ ପଥରୁ (ସାଧନା ମାର୍ଗରୁ) କଦାପି ପଛଘୁଞ୍ଚା ଦିଅନ୍ତିନାହିଁ ।'

ଏହିଭଳି ଯାହାଙ୍କର ଏକମାତ୍ର ଉଦ୍ଦେଶ୍ୟ, ଲକ୍ଷ, ଧ୍ୟେୟ କେବଳ ପରମାତ୍ମତତ୍ତ୍ୱକୁ ପ୍ରାପ୍ତି କରିବାପାଇଁ ହୋଇଯାଇଛି, ସେ ଲକ୍ଷପୂର୍ତ୍ତି ନହେଲା ପର୍ଯ୍ୟନ୍ତ ପ୍ରତ୍ୟେକ ଯାଗାରେ ରହିପାରିବେନାହିଁ, ଯେଉଁଠାରେ ଟଙ୍କାର ଆମଦାନି ନାହିଁ ବରଂ ଓଲଟା ଖର୍ଚ୍ଚହେଉଛି, ସେଠାରେ କଣ ଲୋଭି ପୁରୁଷ ରହିପାରିବ ? ଯିଏ ଅସଲି ହୃଦୟରେ ପରମାତ୍ମାପ୍ରାପ୍ତି ଚାହୁଁଅଛି, ତାହାକୁ କଣ କୌଣସି ନକଲି ଗୁରୁ ଭଣ୍ଡାଇ ଭ୍ରମିତ କରିପାରିବ?

ବାସ୍ତବରେ ପରମାତ୍ମତତ୍ତ୍ୱ କଣ? ମୋର ଆତ୍ମସ୍ୱରୂପ କଣ? ଜଗତର ବାସ୍ତବିକ ସ୍ୱରୂପ କଣ?-ଏହିପରି ଯାହା ହୃଦୟରେ ତୀବ୍ରଜିଜ୍ଞାସା ଅଛି, ସେ ସବୁସ୍ଥାନରେ, ପ୍ରବଚନ, କଥାରେ ରହିପାରିବନାହିଁ। ଯଦି ସେ ରହିଯାଉଛି, ତେବେ ଏଥିରୁ ପ୍ରମାଣିତ ହେଉଛି କି, ଏ ପର୍ଯ୍ୟନ୍ତ ତାର ଉଦ୍ଦେଶ୍ୟ ଜାଗ୍ରତ ହୋଇନାହିଁ, ସେ କେତେ ବଡ ପଣ୍ଡିତ, ଶାସ୍ତ୍ରଜ୍ଞ ହୋଇଥାଉ ନା କାହିଁକି!

ମୋତେ କେବଳ ପରମାତ୍ମତତ୍ତ୍ୱକୁ ହିଁ ପ୍ରାପ୍ତ କରିବାକୁ ହେବ–ଏହିପରି ଉଦ୍ଦେଶ୍ୟ ହୋଇଯିବା ସର୍ବଶ୍ରେଷ୍ଠ ଅଟେ, ଯାହାର ମୂଲ୍ୟ ପନ୍ଦରଅଣା। ଭାବ (ସାତ୍ତ୍ୱିକ, ରାଜସ, ତାମସ) ତ ସମୟାନୁସାରେ ବଦଳିଯାଉଛି। କେତେବେଳେ ଭାବ ଭଲ(ସାତ୍ତ୍ୱିକ) ରହୁଛିତ କେତେବେଳେ ଖରାପ(ତାମସ)। କିନ୍ତୁ ଉଦ୍ଦେଶ୍ୟ କେବେହେଲେ ବଦଳେନାହିଁ। ଯଦି ଉଦ୍ଦେଶ୍ୟ ବଦଳିଯାଉଛି, ତେବେ ଏପର୍ଯ୍ୟନ୍ତ ଉଦ୍ଦେଶ୍ୟ ନିର୍ମାଣ ହୋଇନାହିଁ ଅଥବା ଆମେ ନିଜର ବାସ୍ତବିକ ଉଦ୍ଦେଶ୍ୟ ବିଷୟରେ ଅବଗତ ହୋଇନାହେଁ।

ଉଦ୍ଦେଶ୍ୟ ମନୁଷ୍ୟର ପ୍ରତିଷ୍ଠା(ପ୍ରାଣ) ଅଟେ। ଯାହାର କୌଣସି ଉଦ୍ଦେଶ୍ୟନାହିଁ, ସେ ବାସ୍ତବରେ ମନୁଷ୍ୟନୁହେଁ। ଆଜି–କାଲି ବହୁତ ବଡ–ବଡ ସ୍କୁଲ ଓ କଲେଜ ରହିଛି, ଯେଉଁଥିରେ ଲକ୍ଷ–ଲକ୍ଷ ବିଦ୍ୟାର୍ଥି ପଢୁଅଛନ୍ତି। କିନ୍ତୁ ଆମକୁ କାହିଁକି ପଢାଯାଉଛି? ପାଠ–ପଢିବାର

ବାସ୍ତବିକ ଉଦ୍ଦେଶ୍ୟ କଣ–ଏକଥା ବିଦ୍ୟାର୍ଥୀମାନଙ୍କୁ ଜଣାନାହିଁ ତଥା ଅଧ୍ୟାପକମାନଙ୍କୁ ମଧ୍ୟ ଜଣାନାହିଁ। ବଡଆଶ୍ଚର୍ଯ୍ୟର କଥା, ଆମ୍ଭେ ପଢୁଛେ, କିନ୍ତୁ ନିଜ ଉଦ୍ଦେଶ୍ୟ ବିଷୟରେ ଆମକୁ ଜଣାନାହିଁ!

ବାସ୍ତବରେ ଉଦ୍ଦେଶ୍ୟ ନିର୍ମାଣ କରିବା ଅପେକ୍ଷା, ପୂର୍ବ ଉଦ୍ଦେଶ୍ୟକୁ ଜାଣିଯିବା ଶ୍ରେଷ୍ଠ ଅଟେ। ଏହି ମନୁଷ୍ୟଶରୀର ଆମେ ନିଜିଚ୍ଛାନୁସାରେ ପାଇନାହେଁ। ଭଗବାନ ନିଜର ପ୍ରାପ୍ତିପାଇଁ ମନୁଷ୍ୟଶରୀର ଦେଇଛନ୍ତି#, ଏହି ଇଦ୍ଦେଶ୍ୟ ଯୋଗୁଁ ହିଁ ମନୁଷ୍ୟଶରୀରର ମହିମା, ନଚେତ୍ ପଞ୍ଚମହାଭୂତରେ ଗଠିତ ଏହି ଶରୀରର କୌଣସି ମହିମା ନାହିଁ। ଶରୀର ତ ମଳ–ମୂତ୍ର ବନାଇବାର ଗୋଟିଏ ଯନ୍ତ୍ର । ଭଗବାନଙ୍କୁ ଭୋଗଲଗାଇଥିବା ସ୍ୱାଦିଷ୍ଟ ମିଷ୍ଟାନ୍ନ ଖୁଆଇଦେଲେ, ତାହା ପରଦିନକୁ ମଳ(ବିଷ୍ଠା) ହୋଇଯିବ! ଗଙ୍ଗା ଓ ଜମୁନାର ମହାନ୍ ପବିତ୍ର ଜଳ ପିଆଇଦେଲେ, ତାହା ମୂତ୍ର(ପରିସ୍ରା) ହୋଇ ବାହାରିଯିବ। ଯିଏ ଏପରି ଦୁର୍ଗନ୍ଧ–ପଦାର୍ଥକୁ ଜାତ କରୁଥିବାର ଗୋଟିଏ ଯନ୍ତ୍ର, ସେହି ଶରୀରର କୌଣସି ମହିମା ନାହିଁ ମହିମା

---

# କବହୁଁକ କରି କରୁନା ନର ଦେହୀ। ଦେତ ଈଶ ବିନୁ ହେତ ସନେହି।।

(ମାନସ ୭।୪୪।୩)

ଏହି ତନ କର ଫଲ ବିଷୟ ନ ଭାଈ' (ମାନସ୭।୪୪।୧); ' ସାଧନଧାମ ମୋଛକର ଦ୍ୱାରା' (ମାନସ୭।୪୩।୪)।

ବାସ୍ତବରେ ପରମାତ୍ମାଙ୍କୁ ପ୍ରାପ୍ତିପାଇଁ କରାଯାଉଥିବା ଉଦ୍ଦେଶ୍ୟର । ସେଥିରେ ହିଁ ମନୁଷ୍ୟର ମନୁଷ୍ୟତା ନିହିତ । ସୁତରାଂ କରୁଣାବରୁଣାଳୟ ପରମପୁରୁଷ ପରମାତ୍ମା ଯେଉଁ ଉଦ୍ଦେଶ୍ୟ ନିମନ୍ତେ ଜୀବକୁ ମନୁଷ୍ୟଶରୀର ପ୍ରଦାନ କରିଛନ୍ତି, ତାହାକୁ ଜାଣିବା ମନୁଷ୍ୟର ପରମ କର୍ତ୍ତବ୍ୟ । ତାତ୍ପର୍ଯ୍ୟ ଏହା କି, ଉଦ୍ଦେଶ୍ୟ ପ୍ରଥମରୁ ନିର୍ମାଣ ହୋଇଛି ଓ ମନୁଷ୍ୟଶରୀର ପରେ । ଯେପରି କୌଣସି ତୀର୍ଥସ୍ଥାନକୁ ଯିବାର ଉଦ୍ଦେଶ୍ୟ ପ୍ରଥମେ ହୁଏ, ଓ ଯାତ୍ରାପରେ । ସୁତରାଂ ପୂର୍ବ ଉଦ୍ଦେଶ୍ୟକୁ ଚିହ୍ନିବା ଉଚିତ୍, ବନାଇବା ନୁହେଁ, ସେହି ପୂର୍ବ ଉଦ୍ଦେଶ୍ୟର ସିଦ୍ଧି ନିମନ୍ତେ ଭଗବାନ ପ୍ରତ୍ୟେକ ମନୁଷ୍ୟକୁ ଯୋଗ୍ୟତା, ଅଧିକାର, ବିବେକ ଇତ୍ୟାଦି ଦେଇଛନ୍ତି । ଅତଃ ମାତ୍ରମନୁଷ୍ୟ ପରମାତ୍ମାପ୍ରାପ୍ତିର ଅଧିକାରୀ ଅଟନ୍ତି ।

ଧନପ୍ରାପ୍ତିରେ ସମସ୍ତଙ୍କର ସମାନ ଅଧିକାର ନାହିଁ । ମାନ–ପ୍ରଶଂସା ତଥା ଆରୋଗ୍ୟତା ପ୍ରାପ୍ତିରେ ମଧ୍ୟ ସମସ୍ତେ ସମାନ ଅଧିକାରୀ ନୁହଁନ୍ତି; କିନ୍ତୁ ପରମାତ୍ମାଙ୍କ ପ୍ରାପ୍ତିବିଷୟରେ ସମସ୍ତେ ସମାନ ଅଧିକାରୀ ଅଟନ୍ତି । ଯିଏ ବିଲକୁଲ୍ ଅଶିକ୍ଷିତ, ଯାହାପାଖରେ ନା ତ ବିବେକ ରହିଛି, ନା ସମାଦିଷଟ୍ ସମ୍ପତ୍ତି ଅଛି, କିନ୍ତୁ ଯଦି ତାହର ହୃଦୟରେ ପରମାତ୍ମତତ୍ତ୍ୱପ୍ରାପ୍ତି ପାଇଁ ତୀବ୍ରଲାଳସା(ଜିଜ୍ଞାସା) ହୋଇଯାଏ ଅଥବା ଯଦି ସେ ଦୁଃଖାଳୟ ସଂସାରରର ଭୋଗରୁ ମୁକ୍ତିପାଇଁ

ଆକୁଳ–ବ୍ୟାକୁଳ ହୋଇଯାଏ, ତେବେ ସେ ଅନାୟାସରେ ପରମାତ୍ମାଙ୍କୁ ଜାଣିପାରିବ; ଏଣୁ ଭଗବାନ କହିଛନ୍ତି– 'ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍'(ଗୀତା୨।୨୯)।

କେବଳ ଶୁଣିକରି ମଧ୍ୟ ଏହି ତତ୍ତ୍ୱକୁ କେହିହେଲେ ଜାଣିପାରନ୍ତିନାହିଁ। ତାତ୍ପର୍ଯ୍ୟ ଏହାକି, ପଢିକରି, ଉଦ୍ୟୋଗ ତଥା ପରିଶ୍ରମକରି ଯେ ଏହି ତତ୍ତ୍ୱକୁ କେହି ଜାଣିଯିବ–ଏହା ଅସମ୍ଭବ କଥା। ଯେପରି କରୋଡପତି ପାଖରେ କସ୍ତୁରୀ ମିଳେନାହିଁ, କାରଣ ସେ ତାହା କ୍ରୟ କରିନାହିଁ। କିନ୍ତୁ ଜଙ୍ଗଲି ବ୍ୟକ୍ତିପାଖରେ ମିଳିଯାଏ। କାରଣ, ସେ ମୃଗର ନାଭୀରୁ ବାହାରକରି ରଖିଅଛି। ଏହିପରି ପରମାତ୍ମାଙ୍କ ପ୍ରାପ୍ତି ସାଧାରଣ–ରୁ–ସାଧାରଣ ମନୁଷ୍ୟକୁ ମଧ୍ୟ(ତୀବ୍ର ଜିଜ୍ଞାସାଦ୍ୱାର) ଅତି ସୁଗମତା ପୂର୍ବକ ହୋଇପାରିବ। ଏଣୁ ଭଗବାନଙ୍କଦ୍ୱାରା ନିର୍ମାଣ କରାଯାଇଥିବା ମନୁଷ୍ୟ ଜନ୍ମର ଉଦ୍ଦେଶ୍ୟ ବିଷୟରେ ଅବଗତ ହୋଇ ଆମକୁ ସାଧନାରେ ତତ୍ପରତା ସହକାରେ ଲାଗିଯିବା ଆବଶ୍ୟକ। କାରଣ, ଜଣାନାହିଁ କ୍ଷଣଭଙ୍ଗୁର ଏହି ଦେବଦୁର୍ଲ୍ଲଭ ଶରୀର ପାଣିଫୋଟକାପରି କେତେବେଳେ ପାଣିରେ ମିଳାଇଯିବ।

ଗୋବିନ୍ଦ ଗୋପାଳକୀ ଜୟ!

॥ ଶ୍ରୀହରିଃ ॥

# ପ୍ରାର୍ଥନା

ହେ ନାଥ ! ଆପଣଙ୍କ ଠାରେ ମୋର ପ୍ରାର୍ଥନା ଏହା କି ଆପଣ ମୋତେ ପ୍ରିୟ ଲାଗନ୍ତୁ । କେବଳ ଏହା ମୋର ମାଗୁଣି ଅଟେ । ଅନ୍ୟ କୌଣସି ମାଗୁଣି ନାହିଁ ।

ହେ ନାଥ ! ଯଦି ମୁଁ ସ୍ୱର୍ଗ ଚାହୁଁଛି, ତେବେ ମୋତେ ନର୍କରେ ପକାଇ ଦିଅନ୍ତୁ; ଯଦି ସୁଖ ଚାହୁଁଛି ତେବେ ଅନନ୍ତ ଦୁଃଖ ଦିଅନ୍ତୁ, କିନ୍ତୁ ଆପଣ ମୋତେ ପ୍ରିୟ ଲାଗନ୍ତୁ । ହେ ନାଥ ! ଆପଣଙ୍କ ବିନା ମୁଁ ଯେପରି ରହିନପାରେ, ସେହିପରି ବ୍ୟାକୁଳତା ଆପଣ ମୋତେ ପ୍ରଦାନ କରନ୍ତୁ ।

ହେ ନାଥ ! ଆପଣ ମୋ ହୃଦୟରେ ଏହିପରି ପ୍ରେମର ଅଗ୍ନି ଲଗାଇ ଦିଅନ୍ତୁ ଯେପରି ଆପଣଙ୍କ ବିନା ମୁଁ ବଞ୍ଚି ନ ପାରେ ।

ତ୍ୱମେବ ମାତା ଚ ପିତା ତ୍ୱମେବ

ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।

ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ

ତ୍ୱମେବ ସର୍ବଂ ମମ ଦେବଦେବ ॥

ହେ ପ୍ରଭୁ ! ଆପଣ ହିଁ ମାତା ଏବଂ ଆପଣ ହିଁ ପିତା ଅଟନ୍ତି, ଆପଣ ବନ୍ଧୁ ଏବଂ ମିତ୍ର, ଆପଣ ହିଁ ବିଦ୍ୟା ଏବଂ ଆପଣ ହିଁ ଧନ-ସମ୍ପତ୍ତି ଅଟନ୍ତି; ଦେବେଶ୍ୱର ! ଆପଣ ହିଁ ମୋର ସର୍ବସ୍ୱ ଅଟନ୍ତି ।